ପୁଣ୍ୟବତୀ ଗୋଦାବରୀ

ସଂକଳନ ଓ ସଂପାଦନା :
ଡକ୍ଟର ବିରାଜ ମୋହନ ଦାସ

ପ୍ରକାଶକ :
ସୁଦୀପ୍ତା ପ୍ରକାଶନ
ବୀର ସୁରେନ୍ଦ୍ର ସାଏ ନଗର
ଭୁବନେଶ୍ୱର- ୪

ପ୍ରଥମ ପ୍ରକାଶ :
ଗାନ୍ଧୀ ଜୟନ୍ତୀ, ୧୯୯୭

ପ୍ରଚ୍ଛଦ :
ଅସିତ୍ ମୁଖାର୍ଜୀ

ମୁଦ୍ରଣ:
ସିଟି ପ୍ରିଣ୍ଟର୍ସ
ଆଇ.ଆର.ସି. ଭିଲେଜ
ଭୁବନେଶ୍ୱର- ୧୫

ମୂଲ୍ୟ : ଟ ୬୫.୦୦ (ପଞ୍ଚଷଠି ଟଙ୍କା) ମାତ୍ର

PUNYABATI GODAVARI
Dr. Biraj Mohan Das

Publisher :
Sudipta Prakashan
Vira Surendra Sai Nagar
Bhubaneswar - 751 004

First Edition- 1997

Cover Design :
Asit Mukherjee

Printer :
City Printers
IRC Village, Bhubaneswar- 15

Price : Rs. 65.00 (Rupees Sixty Five only)

# ସୂଚୀପତ୍ର





# ପୁଣ୍ୟବତୀଙ୍କ ସ୍ମୃତିରେ

ସ୍ୱାଧୀନତା ସଂଗ୍ରାମୀମାନଙ୍କ ଦେଶପ୍ରେମ ଆମମାନଙ୍କ ପାଇଁ ତଥା ଏଦେଶର ଭବିଷ୍ୟତ ବଂଶଧରମାନଙ୍କ ପାଇଁ ପ୍ରେରଣାର ଉତ୍ସ ହୋଇ ରହିଛି ଓ ରହିଥିବ । ଦେଶସେବା ଆଳରେ କ୍ଷମତା ଅଧିକାରର ଲିପ୍ସା ନଥିଲା ସେତେବେଳକାର ଜାତୀୟତାବାଦୀ ନେତୃବର୍ଗଙ୍କ ମନରେ । ବରଂ ଦେଶର ସ୍ୱାଧୀନତା ପାଇଁ ନିଜ ଜୀବନର ସବୁ ସୁଖ ସ୍ୱାଚ୍ଛନ୍ଦ୍ୟ ଏପରିକି ସର୍ବନିମ୍ନ ଆବଶ୍ୟକତାକୁ ଜଳାଞ୍ଜଳି ଦେଇ ସେମାନେ ପରାଧୀନତାର କବଳରୁ ମାତୃଭୂମିକୁ ମୁକୁଳାଇବା ପାଇଁ ଚେଷ୍ଟିତଥିଲେ- ଆନ୍ଦୋଳନ କରୁଥିଲେ । ଏହି 'ପୁଣ୍ୟବତୀ ଗୋଦାବରୀ' ପୁସ୍ତକରେ ଓଡ଼ିଶାର ଅନ୍ୟତମ ନାରୀ ସ୍ୱାଧୀନତା ସଂଗ୍ରାମୀ ଏବଂ ସମାଜ ସେବିକା ଗୋଦାବରୀ ଦେବୀଙ୍କ ସଂଗ୍ରାମୀ ଜୀବନର କୃତିତ୍ୱ ଓ ସାହିତ୍ୟିକ କୃତି ସମ୍ପର୍କରେ ସମ୍ୟକ୍ ଆଲୋକପାତ କରାଯାଇଛି ।

ସ୍ୱାଧୀନତା ଆନ୍ଦୋଳନରେ ଭାଗନେବାର ନିଷ୍ପତ୍ତିନେବା ବେଳକୁ ଗୋଦାବରୀ ଦେବୀଙ୍କୁ ମାତ୍ର ତେରବର୍ଷ ବୟସ ହୋଇଥିଲା । ତୃତୀୟ ଶ୍ରେଣୀର ଶିକ୍ଷା ସମାପ୍ତପରେ ଆଉ ବିଦ୍ୟାଳୟ ଶିକ୍ଷାଲାଭର ସୁଯୋଗ ତାଙ୍କର ଆସିନାହିଁ । କିନ୍ତୁ ତାଙ୍କ ଜ୍ଞାନ-ପିପାସା ମେଣ୍ଟାଇବା ପାଇଁ ସେ ସେତେବେଳର ବିଭିନ୍ନ ଖବର କାଗଜ, ରାମକୃଷ୍ଣ ପରମହଂସ ଓ ମହାତ୍ମାଗାନ୍ଧୀ ପ୍ରଭୃତିଙ୍କ କୃତିକୁ ପଢୁଥିଲେ । ଖବର କାଗଜ ଗୁଡ଼ିକରୁ, ଲବଣ ସତ୍ୟାଗ୍ରହ ପାଇଁ ତାଙ୍କ ଗାଁ ବାଟଦେଇ ଯାଉଥିବା ସଂଗ୍ରାମୀମାନଙ୍କଠାରୁ ଏବଂ ଗାଁରେ ଥିବା ଦେଶପ୍ରେମୀମାନଙ୍କଠାରୁ ଦେଶର ସଂକଟ ଓ ତାର ନିରାକରଣ ପାଇଁ କରାଯାଉଥିବା ଆନ୍ଦୋଳନ ସଂପର୍କରେ ସେ ଜାଣିଲେ । ଏଥିରେ ଉଦ୍‌ବୁଦ୍ଧ ହୋଇ ନିଷ୍ପତ୍ତି ନେଲେ ସ୍ୱାଧୀନତା ଆନ୍ଦୋଳନରେ ସକ୍ରିୟ ଅଂଶ ଗ୍ରହଣ କରିବେ ବୋଲି । ଚରଖାରେ ସୂତାକଟାରୁ ଆରମ୍ଭ ହୋଇଥିଲା ଏହି ଧାରାର ଉଦ୍‌ଯୋଗପର୍ବ । କୈଶୋର ସୁଲଭ ଚପଳତା ତାଙ୍କୁ ଆନ୍ଦୋଳିତ ନକରି ଆନ୍ଦୋଳିତ କରିଥିଲା ଦେଶର ପରାଧୀନତା । ଅଭିଭାବକ ସୁଲଭ ଆଚରଣର ବଶବର୍ତ୍ତୀ ହୋଇ ତାଙ୍କ ବାପା ପ୍ରଥମେ ତାଙ୍କୁ ଛାଡ଼ି ନଥିଲେ ଆନ୍ଦୋଳନରେ ଯୋଗ ଦେବାପାଇଁ । ଗୋଦାବରୀ ମଧ୍ୟ ବାପାଙ୍କ ସହମତି ଏବଂ ସ୍ୱୀକୃତି ବିନା ଲୁଚି ପଳାଇ ଯିବାର ପ୍ରସ୍ତାବକୁ ପ୍ରତ୍ୟାଖ୍ୟାନକରି ନିଜ ବିଚାରଧାରାର ସ୍ୱାତନ୍ତ୍ର୍ୟକୁ ସେହି ସାନବେଳୁ ପ୍ରତିଷ୍ଠିତ କରିପାରିଥିଲେ । ପରିଶେଷରେ ସେ ଘରଛାଡ଼ିବା ପାଇଁ ଗାନ୍ଧିଜୀଙ୍କଦ୍ୱାରା ଅନୁସୃତ ଏବଂ ପ୍ରସାରିତ ଅହିଂସା ଆନ୍ଦୋଳନର ଅନ୍ୟତମ ପନ୍ଥା 'ଅନଶନ'ର ସହାୟତାରେ ସଫଳ ହେଲେ ।

ଦେଶପ୍ରେମରେ ଉଦ୍‌ବୁଦ୍ଧ ହୋଇ ଆନ୍ଦୋଳନରେ ସକ୍ରିୟ ଭୂମିକା ଗ୍ରହଣ କରିବା ଅବସରରେ କେତେବେଳେ ଗୋଦାବରୀଙ୍କୁ ସମାଜ ଦ୍ୱାରା ଲାଞ୍ଛନା, ଅପମାନ ଆଦି ସହ୍ୟ କରିବାକୁ ପଡ଼ିଛି ତ ଆଉ କେତେବେଳେ ଅନ୍ୟ କାହାର ସ୍ନେହ ଶରଧାରେ ସେସବୁ ଧୋଇ ଯାଇଛି । ଆଇନ ଅମାନ୍ୟ କରି କାରାବରଣ ମଧ୍ୟ କରିବାକୁ ପଡ଼ିଛି । ଗାନ୍ଧିଜୀ ଓଡ଼ିଶାରେ ପଦଯାତ୍ରା କରୁଥିବାବେଳେ ତାଙ୍କ ସାନିଧ୍ୟଲାଭର ସୌଭାଗ୍ୟ ତାଙ୍କର ହୋଇଛି । 'ତାଙ୍କ ଉପରେ ହାତରଖି ଗାନ୍ଧିଜୀ ପଦଯାତ୍ରା କରନ୍ତେ କି'ର ସ୍ୱପ୍ନ କେବଳ ତାଙ୍କର ସାକାର ହୋଇନାହିଁ, ଗାନ୍ଧିଜୀଙ୍କୁ ଓଡ଼ିଆ ଅକ୍ଷର ଶିଖାଇ ତାଙ୍କ (ଗାନ୍ଧିଜୀଙ୍କ)ଦ୍ୱାରା 'ଗୁରୁଜୀ' ବୋଲି ସମ୍ବୋଧିତ ହେବାର ପରମ ସୌଭାଗ୍ୟ ମଧ୍ୟ ତାଙ୍କର ହୋଇଛି ।

ଦେଶ ସ୍ୱାଧୀନ ହେବାପରେ ସଂଗ୍ରାମୀ ଜୀବନ ତାଙ୍କର ରୂପାନ୍ତରିତ ହୋଇଛି ସମାଜସେବୀର ଜୀବନକୁ । ବହୁ ଅନୁଷ୍ଠାନ ସ୍ଥାପନ କରି ଆଉ କେତୋଟି ଅନୁଷ୍ଠାନ ସହିତ ସଂପୃକ୍ତ ରହି ସେ ଜନସେବାରେ ନିୟୋଜିତ କରିଛନ୍ତି ନିଜକୁ । ଖବରକାଗଜ ଓ ବେତାର ପ୍ରଭୃତି ଗଣ ମାଧ୍ୟମ ଜରିଆରେ ଗାନ୍ଧିଜୀ ଓ ବିନୋବାଙ୍କ ବାର୍ତ୍ତାର ପ୍ରଚାର ତଥା ପ୍ରସାର ସହିତ ନାରୀମାନଙ୍କର ପ୍ରଗତି ପାଇଁ ମଧ୍ୟ ସେ ଉଦ୍ୟମ କରିଛନ୍ତି । 'ପ୍ରଜାତନ୍ତ୍ର'ରେ ଗାନ୍ଧିଜୀଙ୍କ ଜନ୍ମ-ଶତବାର୍ଷିକୀ ଅବସରରେ ଯେଉଁ 'ଗାନ୍ଧିବିଚାର' ସ୍ୱତନ୍ତ୍ର ପୃଷ୍ଠା ପ୍ରକାଶ ପାଉଥିଲା ସେଥିରେ ସେ ଧାରାବାହିକ ଭାବରେ 'ପୁଣ୍ୟ ସ୍ମୃତିରୁ ଖିଏ' ଶୀର୍ଷକରେ ଲେଖିଥିଲେ ନିଜ ସଂଗ୍ରାମୀ ଜୀବନର କିଛି ଅନୁଭୂତି । ତାହା ଆଠଟି ଭାଗରେ ୧୩ । ୨୨ । ୬୮, ୨୭ । ୧୨ । ୬୮, ୩ । ୧ । ୬୯, ୧୭ । ୧ । ୬୯, ୨୪ । ୧ । ୬୯, ୧୪ । ୨ । ୬୯, ୨୮ । ୨ । ୬୯ ଏବଂ ୪ । ୪ । ୬୯ରେ ପ୍ରକାଶିତ ହୋଇ ପାଠକୀୟ ସ୍ୱୀକୃତି ଲାଭ କରିଥିଲା । ଆବେଗାନୁଭୂତିରେ ଭରା, ସୁଖପାଠ୍ୟ ତାଙ୍କର ଏହି ସାରସ୍ୱତ କୃତି ଅସଂପୂର୍ଣ୍ଣ ହୋଇ ମଧ୍ୟ ତାଙ୍କ ପାଇଁ 'ଓଡ଼ିଶା ସାହିତ୍ୟ ଏକାଡେମୀ' ସମେତ ବହୁ ଅନୁଷ୍ଠାନର ଆନୁଷ୍ଠାନିକ ସମ୍ମାନ ଆଣି ଦେଇଛି । ପରବର୍ତ୍ତୀ କାଳରେ ସେହି 'ପ୍ରଜାତନ୍ତ୍ର'ର ନାରୀ ଜଗତ ପୃଷ୍ଠାରେ ସେ ଧାରାବାହିକ ଭାବରେ ଲେଖିଥିଲେ 'ପ୍ରାକ୍ ସ୍ୱାଧୀନତା ଯୁଗରେ ଭାରତୀୟ ନାରୀ' ଶୀର୍ଷକରେ ଏକ ଆଲୋଚନା ।

'ପୁଣ୍ୟବତୀ ଗୋଦାବରୀ'ରେ ପ୍ରଥମେ ତାଙ୍କ ଜୀବନୀ ସଂପର୍କରେ ସମ୍ୟକ୍ ସୂଚନା ପ୍ରଦାନ କରାଯିବାର ପ୍ରୟାସ କରାଯାଇଛି । ତା'ପରେ ତାଙ୍କର ଅମୂଲ୍ୟ କୃତିଦ୍ୱୟ; 'ପୁଣ୍ୟ ସ୍ମୃତିରୁ ଖିଏ' ଓ 'ପ୍ରାକ୍ ସ୍ୱାଧୀନତା ଯୁଗରେ ଭାରତୀୟ ନାରୀ (ଯାହା 'ପ୍ରାକ୍ ସ୍ୱାଧୀନତା ଯୁଗରୁ ଭାରତୀୟ ନାରୀ' ଶୀର୍ଷକରେ ପ୍ରଦତ୍ତ), ସ୍ଥାନିତ କରାଯିବାପରେ ତାଙ୍କ ସ୍ମୃତି ଉଦ୍ଦେଶ୍ୟରେ ରଚିତ କେତେଗୁଡ଼ିଏ ଲେଖା ପ୍ରଦାନ କରାଯାଇଛି ।

ଏହି ସମ୍ମାନନୀୟା ଗୋଦାବରୀ ଦେବୀଙ୍କ ସଂସ୍ପର୍ଶରେ ମୁଁ ପ୍ରଥମେ ଆସିଥିଲି ୧୯୭୪ ମସିହାରେ । ସେତେବେଳେ ମୁଁ ଫକୀର ମୋହନ ମହାବିଦ୍ୟାଳୟର ଛାତ୍ରଥିଲି । ତାଙ୍କପରେ ରହୁଥିଲେ ତାଙ୍କର ସଂପର୍କୀୟ ତଥା ମୋର ଅନ୍ୟତମ ଗୁରୁ ଅଧ୍ୟାପକ ଗଣେଶ ପ୍ରସାଦ ଦାସ । ସେହି ଗଣେଶ

ସାର୍‌ଙ୍କ ପାଖକୁ ଯିବା ଆସିବା କଲାବେଳେ ଭେଟିଥିଲି ତାଙ୍କୁ ଓ ତାଙ୍କର ସ୍ୱାମୀ ବିଶିଷ୍ଟ ସ୍ୱାଧୀନତା ସଂଗ୍ରାମୀ ଏବଂ ଓଡ଼ିଶାରେ ସମାଜବାଦୀ ଆନ୍ଦୋଳନର ଅନ୍ୟତମ ବରିଷ୍ଠ ପୁରୋଧା ରବୀନ୍ଦ୍ର ମୋହନ ଦାସଙ୍କୁ । ସେହି ଅବସରରେ ମୁଁ ତାଙ୍କ ମାତୃସ୍ନେହର ସ୍ପର୍ଶ ଲାଭ କରିବାର ସୁଯୋଗ ପାଇଥିଲି ।

ସ୍ୱାଧୀନତାର ପଚାଶବର୍ଷ ପୂର୍ତ୍ତି ଅବସରରେ ଦେଶସାରା ମହାସମାରୋହରେ ପାଳିତ ହେଉଛି 'ସୁବର୍ଣ୍ଣ ଜୟନ୍ତୀ' । ଦେଶକୁ ସମୃଦ୍ଧ କରିବା ନିମିତ୍ତ ନାନା ପ୍ରତିଶ୍ରୁତି ପ୍ରଦାନ, ସଦାଚାର ତଥା ଦେଶସେବାରେ ବ୍ରତୀ ହେବା ନିମିତ୍ତ ଶପଥ ଗ୍ରହଣ ଆଦି ମାଧ୍ୟମରେ ଏହା ହେଉଛି ସାକାର । ଆଉ କେତେକ ସ୍ଥାନରେ ଏହି ଉପଲକ୍ଷେ ସମ୍ମାନମାନ ଆୟୋଜନ କରାଯାଇ ବିତର୍କ/ତର୍ଜମା/ସମୀକ୍ଷା ଆଦି କରାଯାଉଛି ସ୍ୱାଧୀନତା ଲାଭଠାରୁ ଏ ଯାବତ୍ ସରକାରଙ୍କ ଦ୍ୱାରା ଅନୁସରିତ ନୀତି ଏବଂ ରୂପାୟିତ ହୋଇଥିବା ବିଭିନ୍ନ କାର୍ଯ୍ୟକ୍ରମର ସଫଳତା / ବିଫଳତା ସଂପର୍କରେ । ତେବେ ଏଇ ପଚାଶବର୍ଷର ପ୍ରାପ୍ତି / ଅପ୍ରାପ୍ତି, ଲାଭ / କ୍ଷତି, ସଫଳତା / ଅସଫଳତାର ଅଙ୍କ କଷାଠାରୁ ଅଧିକ ସୁଫଳ ମିଳିପାରିବ ଯେଉଁମାନଙ୍କ ତ୍ୟାଗ, ଆତ୍ମୋତ୍ସର୍ଗ, ଆତ୍ମବଳିଦାନରୂପକ ଦେଶପ୍ରେମ ଏହି ସ୍ୱାଧୀନତାର ଭିତ୍ତି ସାଜିଥିଲା ସେମାନଙ୍କ ଜୀବନ ଧାରାକୁ ପ୍ରତ୍ୟକ୍ଷୀଭୂତ କରିବାରେ । ଏ ଜାତିକୁ ଉଦ୍‌ବୁଦ୍ଧ କରିବାରେ, ସମୃଦ୍ଧ କରିବାରେ ସର୍ବୋପରି ସ୍ୱାଧୀନତାକୁ ଅକ୍ଷୁଣ୍ଣ ରଖିବାରେ ସେହି ପ୍ରାତଃ ସ୍ମରଣୀୟ ସ୍ୱାଧୀନତା ସଂଗ୍ରାମୀମାନଙ୍କର ଜୀବନ ଚର୍ଯ୍ୟାର ସ୍ମରଣ, ଅନୁଧ୍ୟାନ, ଅନୁଶୀଳନ ଏବଂ ଅନୁସରଣ ଯେ ଅଧିକ ସହାୟକ ହେବ ଏଥିରେ ଦ୍ୱିମତ ନାହିଁ । ସ୍ୱାଧୀନତାର ସୁବର୍ଣ୍ଣଜୟନ୍ତୀ ସନ୍ଧ୍ୟରେ ଗୋଦାବରୀ ଦେବୀଙ୍କ ଜନ୍ମତିଥି ଅକ୍ଟୋବର ଦୁଇ ୧୯୯୭ରେ ପ୍ରକାଶ ପାଉଥିବା 'ପୁଣ୍ୟବତୀ ଗୋଦାବରୀ' ଏହି ଧାରା ଅନୁବର୍ତ୍ତୀ ଏକ ପ୍ରୟାସ ।

- ବିରାଜ ମୋହନ ଦାସ

# ପୁଣ୍ୟବତୀ ଗୋଦାବରୀ ଦେବୀ

ବିରାଜ ମୋହନ ଦାସ

ଖରସୁଆଁ ନଈକୂଳରେ ଗାଁଟିଏ, ନାଁ ତା'ର କଲ୍ୟାଣପୁର । ଅବିଭକ୍ତ କଟକ ଜିଲ୍ଲାର ଯାଜପୁର ସବ୍‌ଡ଼ିଭିଜନ ଅନ୍ତର୍ଗତ ବିଞ୍ଝାରପୁର ଥାନା ଅଧୀନରେ ଗାଁଟି ଅବସ୍ଥିତ । ସେଇ କଲ୍ୟାଣପୁରରେ ୧୯୧୬ ମସିହା ଅକ୍ଟୋବର ମାସରେ ପିତା ବାଞ୍ଛାନିଧି ଦାସଙ୍କ ଔରସରୁ ମାତା ହାରାମଣୀ ଦେବୀଙ୍କ ଗର୍ଭରୁ ଜନ୍ମ ହୋଇଥିଲା କନ୍ୟା ସନ୍ତାନଟିଏ । ଅକ୍ଟୋବର ମାସ ଦୁଇ ତାରିଖ ଦିନ, ଯେଉଁଦିନ ଜନ୍ମ ହୋଇଥିଲେ ଜାତିର ପିତା ମହାତ୍ମାଗାନ୍ଧୀ, ଯିଏ କେବଳ ଭାରତକୁ ସ୍ୱାଧୀନ କରାଇବାରେ ନେତୃତ୍ୱ ନେଇନଥିଲେ, ସମଗ୍ର ପୃଥିବୀକୁ ଏକ ନୂଆଧାରାର ଦିଗ୍‌ଦର୍ଶନ ପ୍ରଦାନ କରିଗଲେ, ଠିକ୍ ସେଇଦିନ ଜନ୍ମହୋଇଥିଲା ଶିଶୁକନ୍ୟାଟି । କିଏ ଜାଣିଥିଲା ସେଇ ଶିଶୁକନ୍ୟାଟି ମଧ ମହାତ୍ମାଗାନ୍ଧୀଙ୍କ ପ୍ରଦର୍ଶିତ ପଥ ଅନୁସରଣ କରି କୈଶୋର ନ ହେଉଣୁ ଭାରତର ସ୍ୱାଧୀନତା ଆନ୍ଦୋଳନରେ ଝାସ ଦେବ ? ଝିଅଟିର ନାଁ ଗୋଦାବରୀ, ଯିଏ ସଂଗ୍ରାମୀମାନଙ୍କ ମହଲରେ ଗୋଦାବରୀ ଦେବୀ ନାମରେ ପରିଚିତ ଥିଲେ ।

୧୯୨୧ ମସିହାବେଳକୁ ତାଙ୍କ ଗାଁରେ ସ୍ୱରାଜ ଆନ୍ଦୋଳନର ପ୍ରଚାର ଆରମ୍ଭ ହୋଇ ଯାଇଥିଲା । କଲିକତାରୁ ଏମ୍.ଏ. ଶିକ୍ଷାଲାଭ କରି ଗାଁକୁ ଫେରିଲେ ଅଦ୍ୱୈତ ଚରଣ ଦାସ । ଆଣ୍ଠୁ ଲୁଚୁ ନଥିବା ଖଦି ଖଣ୍ଡିଏ ସେ ପିନ୍ଧୁଥିଲେ ଓ ଉପରେ ପକାଉଥିଲେ ଚାଦରଟିଏ । ସେ ଗାଁ ଗାଁ ବୁଲି ପ୍ରଚାର କରୁଥିଲେ ସ୍ୱରାଜର ବାର୍ତ୍ତା । ଲୋକଙ୍କୁ ପ୍ରବର୍ତ୍ତାଉଥିଲେ ସ୍ୱଦେଶୀ ଜିନିଷ ବ୍ୟବହାର କରିବା ପାଇଁ, ସୂତା କାଟିବା ପାଇଁ । ସୂତାକଟାର ପ୍ରସାର ହେବା ପରେ ସେ ବୁଲିବୁଲି ଅରଟ ସଜାଡ଼ିବା ଆଦି କାର୍ଯ୍ୟ କରୁଥିଲେ । ସେ ଥିଲେ ଗୋଦାବରୀ ଦେବୀଙ୍କ ବଡ଼ବାପା ପୁଅ ଭାଇ । ସେଇଗାଁର ଆଉଜଣେ ମଧ ଥିଲେ, ଯିଏ ଉତ୍କଳମଣି ଗୋପବନ୍ଧୁଙ୍କର ପ୍ରିୟ ଶିଷ୍ୟ ଥିଲେ । ଗାଁରେ ପ୍ରାଇମେରୀ ସ୍କୁଲ ସ୍ଥାପନ, ବାଳିକା ଶିକ୍ଷା, ଅସ୍ପୃଶ୍ୟତା ନିବାରଣ ଆଦିର ପ୍ରଚାର କରୁଥିଲେ । ତାଙ୍କ ନାଁ, ରଘୁନାଥ ଦାସ, ଗୋଦାବରୀଙ୍କ ଅତି ଆପଣାର ରଘୁନାଥ ସାଆନ୍ତ । ଏ ଦୁହିଁଙ୍କ ସାଙ୍ଗରେ ମିଶି ଯାଉଥିଲେ ଗାଁ ଟୋକାଏ । ଗାଇ ଗାଇ ବୁଲୁଥିଲେ;- ''ମନ୍ଦେ ମନ୍ଦେ ନବ ଆନନ୍ଦେ, ଗାଅରେ ଭାରତ ସ୍ୱାଧୀନ / ନବପ୍ରାଣେ ଆଜି ଉଠ ହେ ଅଖିଳ ଭାରତ ସନ୍ତାନ ।'' - ଏସବୁ ପ୍ରଭାବିତ କରୁଥିଲା ଟିକିଝିଅଟିକୁ ।

ଗାଁକୁ ଲାଗି ବହି ଯାଉଛି ଖରସୁଆଁ ନଈ । ଖରାଦିନେ ସିନା ତାର ଶୀତଳ ସମୀରଣର ସ୍ପର୍ଶରେ ଗ୍ରାମବାସୀଙ୍କୁ ପୁଲକିତ କରାଏ ବା ତା' ଜଳରେ ସ୍ନାନ କରି ଗ୍ରାମବାସୀମାନେ ଗ୍ରୀଷ୍ମ ଦାଉରୁ ରକ୍ଷା ପାଆନ୍ତି କିନ୍ତୁ ୧୯୨୫ରୁ ୧୯୨୭ ପର୍ଯ୍ୟନ୍ତ ତିନିବର୍ଷ ଧରି ବର୍ଷାଦିନେ ଏବଂ ଶରତ କାଳରେ ସେ ତା'ର ଭୟଙ୍କର ରୂପ ପ୍ରଦର୍ଶନ କରିବା ସଙ୍ଗେ ସଙ୍ଗେ ବନ୍ୟାର କରାଳ କବଳରେ ତା' କୂଳରେ ଥିବା ଅନ୍ୟ ଗାଁ'ଗୁଡ଼ିକ ସମେତ କଲ୍ୟାଣପୁରର ବାସିନ୍ଦାମାନଙ୍କ ଜୀବନ ଯାତ୍ରାକୁ ଧ୍ୱସ୍ତବିଧ୍ୱସ୍ତ କରିଦେଲା । ବିପନ୍ନ ହୋଇଗଲା ବହୁ ପରିବାରର ସ୍ଥିତି । ଅନ୍ୟମାନଙ୍କ ଭଳି ତାଙ୍କ ପକ୍‌କାଘରର ଫାଳେ ଅଂଶ ମଧ୍ୟ ଭାଙ୍ଗି ପଡ଼ିଲା । ବନ୍ୟାବେଳେ ଡଙ୍ଗାଘରେ ବସି ଝିଅଟି ଦେଖିଛି, ପଣ୍ଡିତ ଗୋପବନ୍ଧୁ ଦାସଙ୍କୁ, ଦୀନବନ୍ଧୁ ଆଣ୍ଠୁଜ ସାହେବଙ୍କୁ । ସେମାନେ ଡଙ୍ଗାରେ ଚୁଡ଼ା, ଚାଉଳ ନେଇ ଯାଇଥିଲେ ଅସହାୟ ଲୋକମାନଙ୍କୁ ଭୋକ ଉପାସରୁ ବଞ୍ଚାଇବାପାଇଁ । କିନ୍ତୁ ଗାଁର ସବୁଠାରୁ ଦରିଦ୍ରଲୋକ ମଧ୍ୟ ସେମାନଙ୍କ ଦ୍ୱାରା ପ୍ରଦତ୍ତ ସାହାଯ୍ୟକୁ ପ୍ରତ୍ୟାଖ୍ୟାନ କରୁଥାଏ 'ଛତ୍ର ଚାଉଳ' କହି । ପ୍ରଥମବର୍ଷ ବନ୍ୟାରେ ଭାଙ୍ଗି ଯାଇଥିଲା ତାଙ୍କ ଘରର ଫାଳେ । ବାକୀଥିବା ଫାଳକ ମଧ୍ୟ ତା' ପର ବନ୍ୟାରେ ଭାଙ୍ଗିଗଲା । ସେମାନେ ଆଶ୍ରୟ ନେଲେ ଚଢ଼ପାଡ଼ୀରେ । କେବଳ ତାଙ୍କ ଘର ନୁହେଁ, ଆହୁରି ଅନେକଙ୍କ ଘର ସହିତ ତାଙ୍କର ଆପଣାର ରଘୁନାଥ ସାଆନ୍ତଙ୍କ ଘର ଖାଲି ଭାସିଗଲାନାହିଁ ତାଙ୍କର ଅସୁସ୍ଥ ବଡ଼ ଭାଇ ସେତିକିବେଳେ ଶେଷ ନିଃଶ୍ୱାସ ତ୍ୟାଗକଲେ । ଅଦ୍ୱୈତ ଚରଣ ଦାସ ଏବଂ ରଘୁନାଥ ଦାସଙ୍କ ଆଦର୍ଶ ତଥା ବ୍ୟକ୍ତିତ୍ୱ ପ୍ରତି ଝିଅଟିର ଥିଲା ଅହେତୁକ ଆକର୍ଷଣ । ଅସୀମ ଭକ୍ତି ଓ ସମ୍ମାନ । ସେ ଭଲ ପଢୁଥିବାରୁ ମଝିରେ ମଝିରେ ତା' ପଢ଼ାପଢ଼ି ଦେଖୁଥିଲେ ରଘୁନାଥ ସାଆନ୍ତ । ରଘୁନାଥ ସାଆନ୍ତଙ୍କର ଏ ବିପତ୍ତି ତାକୁ ଭୀଷଣ ଆଘାତ ଦେଇଥିଲା । ନିଜର ଭରଣ ପୋଷଣ ପାଇଁ ସେତେବେଳେ ଗଠିତ ହୋଇଥିବା ଯାଜପୁର ଲୋକାଲ ବୋର୍ଡ଼ରେ ରଘୁନାଥ ସାଆନ୍ତ କିରାନୀ କାମରେ ଯୋଗଦେଲେ ।

କଟକ ଜିଲ୍ଲା ବୋର୍ଡ଼ର ଚେୟାରମେନ୍ ଭାବରେ ଗୋପବନ୍ଧୁ ଚୌଧୁରୀ ନିର୍ବାଚିତ ହେଲେ । ବନ୍ୟାଗ୍ରସ୍ତ ବରୀ ଅଞ୍ଚଳର ଦୁର୍ଦ୍ଦଶା ଉପରେ ସେ ସବ୍‌ଡେପୁଟୀ ଭାବରେ ଦେଇଥିବା ରିପୋର୍ଟ ସରକାର ଗ୍ରହଣ ନ କରିବାରୁ ସରକାରୀ ଚାକିରି ଛାଡ଼ି ସେ ଲୋକଙ୍କ ସେବାରେ ନିଜକୁ ନିୟୋଜିତ କରିଥିଲେ । ଜିଲ୍ଲାବୋର୍ଡ଼ ଅଧୀନସ୍ଥ ପ୍ରାଇମେରୀ ସ୍କୁଲର ଛାତ୍ରମାନଙ୍କ ମନରେ ଜାତୀୟତା ଭାବର ଉଦ୍ରେକ ନିମିତ୍ତ ସେ କେତେଗୁଡ଼ିଏ କାର୍ଯ୍ୟପନ୍ଥା ସ୍ଥିର କରିଥିଲେ । ଏଥି ମଧ୍ୟରୁ ଗୋଟିଏ ଥିଲା ନିଜ ପରିଧେୟ ପାଇଁ ସୂତାକାଟିବା । ଗୋଦାବରୀ ଛୋଟବେଳୁ ସୂତାକଟା ଶିଖିଥିଲେ ତାଙ୍କ ଗାଁରେ । ସ୍କୁଲକୁ ସତ୍ୟବାଦୀରୁ ଜଣେ ଶିକ୍ଷକ ଆସି ଶିଖାଇଥିଲେ । ଏହି ସୂତାକଟା ଶିଖାଇବା, ଖବର କାଗଜ ପଢ଼ିବା ଶିଖାଇବା ଆଦି କାମରେ ନିଜକୁ ସାମିଲ କଲେ ରଘୁନାଥ ଦାସ । ଅପରପ୍ରାଇମେରୀ ପଢୁଥିବାବେଳେ ଯାଜପୁର ଠାରେ ହୋଇଥିବା

ସୂତାକଟା ପ୍ରତିଯୋଗିତାରେ ଭାଗନେଇ ସେଦିନ ପ୍ରଥମ ସ୍ଥାନ ଅଧିକାର କରି ସମସ୍ତଙ୍କୁ ଚମତ୍କୃତ କରି ଦେଇଥିଲେ ଗୋଦାବରୀ । ଏଥିପାଇଁ ପୁରସ୍କାର ପ୍ରଦାନ କଲାବେଳେ ଅଧ୍ୟକ୍ଷ ଗୋପବନ୍ଧୁ ଚୌଧୁରୀ ଶ୍ରଦ୍ଧାରେ ତାଙ୍କ ମୁଣ୍ଡ ଉପରେ ହାତ ବୁଲାଇ ଦେଇଥିଲେ । ତାଙ୍କର ସେଇ ଶ୍ରଦ୍ଧାସ୍ପଦ ସ୍ପର୍ଶ ଏବଂ ବ୍ୟକ୍ତିତ୍ୱରେ ମୁଗ୍ଧ ଗୋଦାବରୀଙ୍କ ମନରେ ସେହି ମୁହୂର୍ତ୍ତରୁ ଜାଗରିତ ହୋଇଥିଲା ଗୋପବନ୍ଧୁ ଚୌଧୁରୀଙ୍କ ପ୍ରତି ଅସୀମ ଭକ୍ତି ।

ପ୍ରତିବର୍ଷ ବନ୍ୟା ଛାଡ଼ିବା ପରେ ପରେ ଲୋକମାନେ ଜ୍ୱର, ଝାଡ଼ା ଆଦି ରୋଗରେ ପୀଡ଼ିତ ହୁଅନ୍ତି । ସେମାନଙ୍କ ମଧ୍ୟରୁ ଅନେକ ମୃତ୍ୟୁବରଣ କରନ୍ତି । ଗୋଟିଏ ବର୍ଷ ଗୋଦାବରୀଙ୍କ ପରିବାରର ବୁଢ଼ୀମା', ବୋଉ ଏବଂ ଚାରିବର୍ଷର ସାନଭାଇ ଜ୍ୱରାକ୍ରାନ୍ତ ହେଲେ । ଘରୋଇ ଶିକ୍ଷକ, ବୈଦ୍ୟ ଦ୍ୱାରା ଚିକିତ୍ସାର ବନ୍ଦୋବସ୍ତ କଲେ । କାଳେ ବୁଢ଼ୀ ମା'ଙ୍କର ରାତିରେକାଳ ହୋଇଯିବ ସେଥିପାଇଁ ଗୋଦାବରୀଙ୍କ ବୋଉ କାଠ ଆଦି ଯୋଗାଡ଼ କରି ରଖିଥିଲେ । କିନ୍ତୁ ଦୁଇଦିନ ପରେ ବୁଢ଼ୀ ମା' ନୁହେଁ, ତାଙ୍କ ବୋଉଙ୍କର କାଳ ହେଲା । ଏହାଖୁବ୍ ଆଘାତ ଦେଲା ତାଙ୍କୁ । ତାଙ୍କ ମନରେ ସଂସାର ପ୍ରତି ବିତୃଷ୍ଣା ଆସିଲା । ମାତ୍ର ଦଶବର୍ଷର ଝିଅ ସେତେବେଳେ ସେ । ଶୁଣିଥିବା ଧ୍ରୁବ, ପ୍ରହ୍ଲାଦର କାହାଣୀ ତାଙ୍କୁ ପ୍ରଭାବିତ କରିଥିଲା । ସେ ଈଶ୍ୱରଙ୍କୁ ଅନବରତ ପ୍ରାର୍ଥନା କରିବାକୁ ଲାଗିଲେ । 'ବୋଉକୁ ଫେରାଇ ଆଣିବେ, ଭଗବାନଙ୍କୁ ସାକ୍ଷାତ କରି,'- ଏହାଥିଲା ଉଦ୍ଦେଶ୍ୟ । ଏଥିପାଇଁ ଆରମ୍ଭ ହୋଇଗଲା ସାଧନା । ଦିନେଦିନେ ନଖାଇ ନ ପିଇ, ଏପରିକି ଦାନ୍ତପତର ନଘଷି ସକାଳୁ ସଂଧ୍ୟା ପର୍ଯ୍ୟନ୍ତ ବସି ରହି କାନ୍ଦି କାନ୍ଦି ଈଶ୍ୱରଙ୍କୁ ଡାକନ୍ତି । ତାଙ୍କ ମନର ସେହି ଦୃଢ଼ତା, ଖାଲି ଭାବପ୍ରବଣତାରେ ପର୍ଯ୍ୟବସିତ ନହୋଇ ପରବର୍ତ୍ତୀ କାଳରେ କର୍ତ୍ତବ୍ୟନିଷ୍ଠାକୁ ରୂପାନ୍ତରିତ ହୋଇଛି । ତାଙ୍କର ଏତାଦୃଶ- ହାବ ଭାବ ଦେଖି ବାପା ବାଞ୍ଛାନିଧି, ବ୍ୟସ୍ତ ବିବ୍ରତ ହୋଇ ପଡ଼ିଥିବାବେଳେ ଉଚିତ ମାର୍ଗପ୍ରଦର୍ଶନ ପାଇଁ ରଘୁନାଥ ସାଆନ୍ତ ଉଦ୍ୟମ କରିଛନ୍ତି ଓ ତାହା ସଫଳ ହୋଇଛି । ସେ ତାଙ୍କୁ ବୁଝାଇ ସୁଝାଇ ଭଲ ଭଲ ବହିସବୁ ଆଣି ପଢ଼ିବାକୁ ଦେଇଛନ୍ତି । ବଙ୍ଗଳାର 'ଶ୍ରୀଶ୍ରୀ ରାମକୃଷ୍ଣ କଥାମୃତ', ଅଶ୍ୱିନୀ କୁମାର ଦତ୍ତଙ୍କ 'ଭକ୍ତିଯୋଗ', ସ୍ୱାମୀ ବିବେକାନନ୍ଦଙ୍କ ବହି, ମହାତ୍ମାଗାନ୍ଧୀଙ୍କ ଗୀତାର ଭାଷ୍ୟ; 'ଅନାସକ୍ତି ଯୋଗ' ପଢ଼ିବାକୁ ଦେବା ସଙ୍ଗେ ସଙ୍ଗେ ଗାନ୍ଧିଜୀଙ୍କ 'ୟଙ୍ଗ୍ ଇଣ୍ଡିଆ'ର ଲେଖାଗୁଡ଼ିକ ପଢ଼ି ବୁଝାଇ ଦିଅନ୍ତି । ପୁଣି ରବିବାର ଦିନ ଆଣି ପହଞ୍ଚାଇ ଦିଅନ୍ତି ସାତ ଦିନର ଓଡ଼ିଆଖବର କାଗଜ 'ସମାଜ', 'ପ୍ରଜାତନ୍ତ୍ର,' 'ଦୈନିକ ଆଶା' ପ୍ରଭୃତି । ଏହି ବହି ସବୁ ପଢ଼ିବାପରେ ତାଙ୍କର ଚିନ୍ତାଧାରା ପରିବର୍ତ୍ତିତ ହୋଇଯାଇଛି । ସେ ଯାହା ପାଇବାକୁ ଚାହୁଁଥିଲେ ତାହା ସମ୍ଭବ ନୁହେଁ କେବଳ ବାଲ୍ୟ ଚପଳତା ତାର ହେତୁ ବୋଲି ତାଙ୍କର ହୃଦ୍‌ବୋଧ ହୋଇଛି । ମଣିଷର ପ୍ରକୃତ କର୍ତ୍ତବ୍ୟ, ଦେଶ ଓ ଜାତି ପ୍ରତି ତା'ର କର୍ତ୍ତବ୍ୟ ବିଷୟରେ ସେ ସଚେତନ ହୋଇଛନ୍ତି । ନିଜର କର୍ତ୍ତବ୍ୟପଥ ସୁନିର୍ଦ୍ଦିଷ୍ଟ କରି ସେହିବେଳୁ ସେ ଦେଶସେବାରେ ନିଜକୁ ନିୟୋଜିତ କରିବା ପାଇଁ ସଂକଳ୍ପବଦ୍ଧ ହୋଇଛନ୍ତି ।

ସେତେବେଳେ ଗାଁରେ ଝିଅମାନଙ୍କର ଗୋଟିଏ ଗୋଷ୍ଠୀ ଥାଏ । ସେମାନେ କୁଆଁର ପୁନେଇ ଗୀତ ଶିଖିବା, କାଇଁଚ ପାଛିଆ ବୁଣିବା, ରୁମାଲ ସିଲାଇ କରିବା, ମୁରୁଜ ପକାଇବା, ଚିତା ପକାଇବା ଆଦି କାମ କରିଥାନ୍ତି ଓ ଆଲୋଚନା କରନ୍ତି । ସେତିକିବେଳେ ଗାଁ'ର ଜଣେ ଭାଇ ସେମାନଙ୍କୁ ସୂତାକାଟିବା ପାଇଁ ଏବଂ ଅନ୍ୟମାନଙ୍କୁ ସୂତାକଟା ଶିଖାଇବା ପାଇଁ ପ୍ରବର୍ତ୍ତାଇଲେ । ଝିଅମାନେ ଲାଗିପଡ଼ିଲେ ସେଥିରେ । ଏମିତି ସୂତା କାଟୁ କାଟୁ ଝିଅମାନେ ସ୍ଥିର କଲେ ସେ ବର୍ଷ କୁଆଁର ପୁନେଇରେ ହାତକଟା ସୂତାରୁ ତିଆରି ଖଦିଲୁଗା ପିନ୍ଧିବେ ବୋଲି । ସେ ବର୍ଷ କୁଆଁର ପୁନେଇରେ କୌତୂହଳୀ ହୋଇ ଖଦି ପିନ୍ଧିଥିବା ଝିଅଟି, ଜୀବନସାରା ଖଦି ଲୁଗା ପିନ୍ଧିବାର ନିଷ୍ପତ୍ତି ପରବର୍ତ୍ତୀ କାଳରେ ନେଇଛି ଯେ ଆଉ ଓହରିନାହିଁ । ସ୍ୱଦେଶୀ ପ୍ରଚାରରେ ଅନୁପ୍ରାଣିତ ହୋଇ ଗୋଦାବରୀଙ୍କ ସମେତ ଗାଁ ଝିଅମାନେ ଦୁଇଟି କଥା ପାଳନ କରିବା ପାଇଁ ପ୍ରତିଜ୍ଞାବଦ୍ଧ ହୋଇଥିଲେ ସେତେବେଳେ । ଗୋଟିଏ ହେଲା; ବିଲାତିଲୁଗା ଛାଡ଼ି ଖଦି ବ୍ୟବହାର କରିବା ଏବଂ ଅନ୍ୟଟି ହେଲା ଗହଣା ନ ପିନ୍ଧିବା ।

ଗାନ୍ଧିଜୀଙ୍କ ଲବଣ ସତ୍ୟାଗ୍ରହର ଅନୁରୂପ ଆନ୍ଦୋଳନ ଓଡ଼ିଶାର ନେତୃବର୍ଗଙ୍କ ଦ୍ୱାରା ସମ୍ପନ୍ନ ହେବାର ସ୍ଥିର ହେଲା । ଏଥିପାଇଁ ଅସହଯୋଗୀମାନଙ୍କ ପଟୁଆର ବିଭିନ୍ନ ସ୍ଥାନରୁ ବାହାରି ବାଲେଶ୍ୱରର ଇଞ୍ଚୁଡ଼ି ଚଟାଣ ଆଡ଼େ ଚାଲିଲା । କଟକରୁ ବାହାରିଥିବା ଏହି ପରି ଏକ ପଟୁଆରର ନେତୃତ୍ୱ ନେଇଥିଲେ ଆଚାର୍ଯ୍ୟ ହରିହର । କଲ୍ୟାଣପୁର ଗାଁରେ ସେମାନେ ପହଞ୍ଚିବାପରେ ଅନ୍ୟ ସ୍ଥାନପରି ଏ ଗାଁର ଝିଅମାନେ ମଧ ଶଙ୍ଖ ହୁଳହୁଳି ପକାଇ ଫୁଲ, ଚନ୍ଦନ, ଧୂପ, ଦୀପରେ ସେମାନଙ୍କୁ ଅଭ୍ୟର୍ଥନା କଲେ । ଗାଁର ମୁଖିଆମାନଙ୍କ ସମସ୍ତ କଟକଣାକୁ ଏଡ଼ାଇ ଗୋଦାବରୀଙ୍କ ନେତୃତ୍ୱରେ ହିଁ ଝିଅମାନଙ୍କ ଦ୍ୱାରା ଏ ଅଭ୍ୟର୍ଥନା ସମ୍ପନ୍ନ ହୋଇଥିଲା ।

ସ୍ୱାଧୀନତା ଆନ୍ଦୋଳନର ବାର୍ତ୍ତା ପ୍ରଚାର କରିବାପାଇଁ ତଥା ଚାନ୍ଦା ସଂଗ୍ରହ ପାଇଁ ରମାଦେବୀ, କୋକିଳ ଦେବୀ ଆଦି ମହିଳାମାନେ ଗାଁ ଗାଁରେ ସଭା କରୁଥିଲେ । ସେମାନେ ପହଞ୍ଚିଥିଲେ ତାଙ୍କ ଗାଁ'ରେ । ଗୋଦାବରୀଙ୍କ ସମେତ ଅନ୍ୟ ଝିଅମାନେ ନାରୀ ସଂଗ୍ରାମୀମାନଙ୍କ ସହିତ ଘର ଘର ବୁଲିଥିଲେ କିନ୍ତୁ ସଭାରେ ଯୋଗ ଦେବାର ସତ୍‌ସାହସ ତାଙ୍କ ଛଡ଼ା ଆଉ କାହାରି ହୋଇନଥିଲା । ବାବାଜୀ ମୁକୁନ୍ଦ ଦାସଙ୍କ ପୀଠରେ ରାତିରେ ହୋଇଥିବା ମହିଳାସଭାରେ ଗୋଦାବରୀ ଭାଷଣ ବି ଦେଇଥିଲେ । ତାଙ୍କର ଏହିସବୁ କାର୍ଯ୍ୟମାନ ଗାଁର ମୁଖିଆମାନଙ୍କ ଦ୍ୱାରା ବହୁ ଚର୍ଚ୍ଚିତ ହୋଇଥିଲା । ସେତିକିବେଳେ ଗୋଦାବରୀ ରମାଦେବୀଙ୍କ ନିକଟରେ ତାଙ୍କ ପାଠ ପଢ଼ିବାପାଇଁ କିଛି ସୁବନ୍ଦୋବସ୍ତ କରିବାକୁ ନିବେଦନ କରିଥିଲେ । ସେ ତୃତୀୟ ଶ୍ରେଣୀରେ ବୃତ୍ତି ପାଇଥିଲେ । ସେବର୍ଷ ଗାଁ ସ୍କୁଲରେ ୟୁ.ପି. ସ୍କୁଲ ଯଦିଓ ଖୋଲା ଯାଇଥିଲା ସେ ବୟଃପ୍ରାପ୍ତା ଯୋଗୁଁ ତାଙ୍କୁ ପଢ଼ିବା ପାଇଁ ଛଡ଼ା ଯାଇନଥିଲା । ରମାଦେବୀ

ପାଠ ପଢ଼ିବାର ସୁଯୋଗ ସମ୍ପର୍କରେ ଯେଉଁ ସୂଚନାଦେଲେ ତାହା ବ୍ୟୟ ସାପେକ୍ଷ ହୋଇଥିବାରୁ ଗୋଦାବରୀଙ୍କର ଅଧିକ ଶିକ୍ଷାଲାଭର ଆକାଂକ୍ଷା ଅପୂରଣୀୟ ହୋଇ ରହିଲା ।

୧୯୩୧ ମସିହାରେ ପୁରୀଠାରେ କଂଗ୍ରେସ ଅଧିବେଶନ ହେବାର ସ୍ଥିର ହୋଇଥିଲା । କଂଗ୍ରେସରେ ମିଶିବା ପାଇଁ ଏବଂ ସ୍ୱାଧୀନତା ଆନ୍ଦୋଳନରେ ଭାଗ ନେବାଲାଗି ଗୋଦାବରୀଙ୍କ ମନରେ ସେତେବେଳେ ପ୍ରବଳ ଆଗ୍ରହ । ସେତିକିବେଳେ ବୁଢ଼ୀମା ସ୍ୱର୍ଗାରୋହଣ କଲେ । ବୁଢ଼ୀ ମା'ଙ୍କ ଦଶାହଦିନ ପୁରୀର ପ୍ରଥମ ସ୍ୱେଚ୍ଛାସେବକ ତାଲିମ ଶିବିର ଯୋଗ ଦେବାପାଇଁ ଗାଁର ଲୁଇବୋଉ ଖୁଡ଼ୀ ବାହାରିଲେ । ତାଙ୍କରି ସାଙ୍ଗରେ ଯିବେ ବୋଲି ସ୍ଥିର କରିନେଲେ । ଭୋର୍‌ରୁ ଗାଧୋଇ ପଢ଼ି ବାପାଙ୍କୁ ସେହି ଓଦା ଲୁଗାରେ ନମସ୍କାର କରି ପୁରୀ ଯିବାକୁ ବାହାରି ପଡ଼ିଲେ । ବାପା, ବାଞ୍ଛାନିଧିବାବୁ ଝିଅକୁ ଟାଣି ଟାଣି ନେଇ ଗୋଟିଏ ବଖରା ଭିତରକୁ ଠେଲି ଦେଇ ବାହାରପଟୁ କବାଟ ଲଗାଇ ଦେଲେ । କେଉଁ ବାପା ଅବା ସେତେବେଳେ ଚାହିଁବ ବାଟ ଚାଲି ଶିଖି ନଥିବା ନିଜର କିଶୋରୀ ଝିଅକୁ ଏପ୍ରକାର ସଂଗ୍ରାମରେ ସାମିଲ ହେବାର ସୁଯୋଗ ଦେବାକୁ ? ଦେହରେ ଓଦାଲୁଗା ଶୁଖିଲା । ତିନିଦିନ କାଳ ଉପାସରେ ସେଇ ବଖରାଟିରେ ଆବଦ୍ଧ ରହିଲେ ସେ । ତାଙ୍କ ପିଉସୀମାନେ ଜୋର କରି ତାଙ୍କ ପାଟିରେ କାଞ୍ଜିପାଣି ପୂରାଇ ଦେଲେ । ଉପାସରେ ରହିବାର ନିଷ୍ପତ୍ତି ତ ବିଘ୍ନ ହେଲା- ଏବେ କ'ଣ କରାଯିବ ? ବୁଦ୍ଧି ଦିଶିଲା; ଉପାସ ଭାଙ୍ଗି, ଭଲରେ ଚଳି ବାପାଙ୍କ ମନ ପରିବର୍ତ୍ତନ କରିବାକୁ ସ୍ଥିର କଲେ ।

ପୁରୀର ପ୍ରଥମ ସ୍ୱେଚ୍ଛା ସେବକ ତାଲିମ ଶିବିର ଶେଷ ହୋଇ ଦ୍ୱିତୀୟ ପର୍ଯ୍ୟାୟ ଶିବିର ଆରମ୍ଭ ହେବା ସମୟ ଆସିଲା । ବାଞ୍ଛାନିଧି ବାବୁ କେତେ ଜଣ ଭାଗଚାଷୀଙ୍କ ସହିତ ବସି ଦାଣ୍ଡ ପିଣ୍ଡାରେ ବସି କଥା ବାର୍ତ୍ତା କରୁଥିଲେ । ଗୋଦାବରୀ ଯାଇ ତାଙ୍କୁ ଜୁହାର ହେଲେ ଏବଂ ପୁରୀ ଯାଉଛନ୍ତି କହି ବନ୍ଧ ଉପରକୁ ଆସିଲେ । ବନ୍ଧ ଉପରେ ସେତେବେଳେ ଲାଲ ବିହାରୀ ପଟ୍ଟନାୟକ ଓରଫ୍ ନାଲୁବାବୁ କେତେଜଣ କର୍ମୀଙ୍କ ସହିତ ଉପସ୍ଥିତ ଥିଲେ । ଲାଲ ବିହାରୀବାବୁ ମାନ୍ଦ୍ରାଜ ସରକାରଙ୍କ ଅଧୀନରେ ଗଞ୍ଜାମ ଜିଲ୍ଲାରେ ଡି.ଆଇ.ରୂପେ କାମ କରୁଥିଲେ । ଖଦି ଆନ୍ଦୋଳନରେ ସାମିଲ ହେବାରୁ ତାଙ୍କୁ କାର୍ଯ୍ୟଚ୍ୟୁତ ହେବାକୁ ପଡ଼ିଥିଲା । ଏତିକିବେଳେ ବାଞ୍ଛାନିଧିବାବୁଙ୍କ ପାଟି ଶୁଭିଲା । ଦେଖାଗଲା, ତାଙ୍କ ସାଙ୍ଗରେ ନ କି ଦଶଜଣ ଲୋକ ଠେଙ୍ଗାଧରି ଆସୁଛନ୍ତି । ନିକଟରେ ପହଞ୍ଚିବା ମାତ୍ରେ ଝିଅକୁ ଦି'ଚାରି ଚାପଡ଼ମାରି ସାରି ବାଞ୍ଛାନିଧିବାବୁ ନାଲୁବାବୁଙ୍କୁ ପିଟିଲେ । ଠେଙ୍ଗା ଧରି ଆସିଥିବା ଲୋକମାନେ କର୍ମୀମାନଙ୍କୁ ମାରଧର କଲେ । କିଛି ସମୟ ଭିତରେ ନାଲୁବାବୁଙ୍କ ସାହିର ଏବଂ ତାଙ୍କ ପକ୍ଷ ଲୋକମାନେ ବି ପହଞ୍ଚିଗଲେ । ବାଞ୍ଛାନିଧିବାବୁଙ୍କଠାରୁ ମାଡ଼ ଖାଇଥିବା ନାଲୁବାବୁ କିନ୍ତୁ ସେତେବେଳେ ତାଙ୍କ ପକ୍ଷ ଲୋକମାନଙ୍କୁ କହୁଥିଲେ, 'କେହି ବାଞ୍ଛାନିଧିବାବୁଙ୍କ ଦେହରେ

ହାତ ଦିଅନାହିଁ ।' ଗାଁର ସୁନ୍ଦରୀ ବୋଉ ମା' ଗୋଦାବରୀଙ୍କ ହାତ ଧରି ଘରକୁ ନେଇଗଲେ । ନାଲୁବାବୁ ଔଷଧ ପଠାଇ ଦେଇଥିଲେ ବାଞ୍ଛାନିଧିବାବୁ ଓ ଗୋଦାବରୀଙ୍କ ପାଇଁ । ସନ୍ଧ୍ୟାରେ ସାନଭାଇ ମଧୁ ଓ ଅଇଲା ମା' ଗୋଦାବରୀଙ୍କୁ ଘରକୁ ଆଣିଲେ ।

ଘରେ ପହଞ୍ଚିବା ପରେ ପୁଣି ଅନଶନ ଆରମ୍ଭ ହେଲା । ବାଞ୍ଛାନିଧିବାବୁ କଟକ ପଳାଇଲେ । ତାଙ୍କର ଏହି ଅନଶନ-ସତ୍ୟାଗ୍ରହ ବିଷୟକ ସମ୍ବାଦକୁ ନିକଟସ୍ଥ ସୟଦପୁରର ବୀର ବେହେରା ଖବର କାଗଜ ଗୁଡ଼ିକରେ ବାହାର କରିଦେଲେ । ସେ ଶିକ୍ଷିତ ମାତ୍ର ଅଛୁଆଁ ଜାତିର ଲୋକ ଥିଲେ । ସମ୍ବାଦଟିକୁ ପଢ଼ି ଅନ୍ୟତମ ନାରୀନେତ୍ରୀ ସରଳାଦେବୀ ଏହି ଖବର ବାହାରିଥିବା ଖବର କାଗଜଟିଏ ହାତରେ ଧରି ଯାଇ କଟକର ବାଖରାବାଦ ଛକରେ ପହଞ୍ଚିଲେ । ଛକ ଉପରେ ଠିଆ ହୋଇ ଉଚ୍ଚସ୍ୱରରେ ଖବରଟିକୁ ପଢ଼ିଲେ ଏବଂ ସେଠାରେ ବାଞ୍ଛାନିଧି ଦାସ କିଏ ଅଛନ୍ତି ଡାକି ଦେବାକୁ କହିଲେ । ବାଞ୍ଛାନିଧିବାବୁ ସେଠାକୁ ଆସିବା ପରେ ସରଳାଦେବୀ ତାଙ୍କ ଉପରେ ଅସନ୍ତୋଷ ପ୍ରକାଶ କଲେ । କିନ୍ତୁ ବାଞ୍ଛାନିଧିବାବୁ ନିଜର ଝିଅକୁ ସରଳାଦେବୀଙ୍କ ଦାୟିତ୍ୱରେ ଛାଡ଼ିବେ ନାହିଁ ବୋଲି ଜଣାଇ ଦେଲେ । ମାତ୍ର ରମାଦେବୀଙ୍କ ଦାୟିତ୍ୱରେ ଝିଅକୁ ଛାଡ଼ିବାପାଇଁ ସମ୍ମତ ହେଲେ । ସରଳା ଦେବୀ ତାଙ୍କୁ ରମାଦେବୀଙ୍କ ପାଖକୁ ନେଇଗଲେ । ସେ ଗୋଦାବରୀଙ୍କ ଦାୟିତ୍ୱ ନେବାକୁ ରାଜି ହେଲେ । ବାଞ୍ଛାନିଧିବାବୁ ଘରକୁ ଚିଠି ଲେଖିଲେ ''ରମାଦେବୀ ତା'ର ଦାୟିତ୍ୱ ନେବାପାଇଁ ରାଜି ହୋଇଛନ୍ତି, ଯଦି କେହି ତାଙ୍କଠାରୁ ଯାଏ ତାହେଲେ ଗୋଦାବରୀକୁ ଛାଡ଼ିଦବ ଏବଂ କହିଦବ, 'ସେ ଯେପରି ଘରକୁ ନ ଫେରେ । ମୁଁ ତା' ମୁହଁ ଚାହିଁବି ନାହିଁ ।'' ସତକୁ ସତ ରମାଦେବୀଙ୍କ ଦ୍ୱାରା ପ୍ରେରିତ, ଓକିଲ ବନ ବିହାରୀ ପାଳିତଙ୍କ କନ୍ୟା ବୀଣାପାଣି ଦେବୀ ରାତିରେ ପହଞ୍ଚିଲେ ଗାଁର ଲାଲବିହାରୀ ବାବୁଙ୍କ ଘରେ । ତହିଁ ପରଦିନ ପୁରୀ ଅଭିମୁଖେ ଯାତ୍ରା ଆରମ୍ଭ ହେଲା ।

ପରଦିନ ସେମାନେ ପହଞ୍ଚିଲେ ପୁରୀଠାରେ । ଧାଡ଼ିକରି ଠିଆ ହେବାପାଇଁ ନିର୍ଦ୍ଦେଶ ଦିଆଗଲା । ରମାଦେବୀଙ୍କୁ ପ୍ରଣାମ କରି ଯାଇ ସେ ଧାଡ଼ିରେ ଠିଆ ହେଲେ । ରମାଦେବୀ ଗୋଦାବରୀଙ୍କ ସ୍ୱାସ୍ଥ୍ୟ ଦେଖି କହିଲେ ଯେ ସେ ଉପାସ ରହିଥିବାଭଳି ଦେଖାଯାଉନାହାନ୍ତି । ତାଙ୍କର ବୋଧହୁଏ ଧାରଣା ହୋଇଥିଲା ଯେ ସେ ଆଉ କାହାର ପ୍ରରୋଚନାରେ ଘର ଛାଡ଼ି ଚାଲି ଆସିଛନ୍ତି । ସେଠାରେ ସେ ରହିଲେ ନୂଆ ଶିକ୍ଷାର୍ଥିନୀମାନଙ୍କ ଶିବିରରେ । କଂଗ୍ରେସ ସେବାଦଳର କମାଣ୍ଡର ମହାରାଷ୍ଟ୍ରରୁ ଆସି ତାଲିମ ଦେବାର ଦାୟିତ୍ୱ ଗ୍ରହଣ କରିଥାନ୍ତି । ତାଙ୍କ ସ୍ତ୍ରୀ ସୁଶୀଳା ରାଓ ମହିଳା ଶିବିର ଦାୟିତ୍ୱରେ ଥିଲେ ବି ସେ ଶାରୀରିକ ଶିକ୍ଷା ଠିକ୍ ରୂପେ ଦେଇ ପାରୁନଥିଲେ । ବାସନ୍ତୀସେନ ନାମ୍ନୀ ଜଣେ ବଙ୍ଗାଳୀଝିଅ ସେହି ଦାୟିତ୍ୱ ତୁଲାଉଥାନ୍ତି । ଶିବିରରେ ଆଚାର୍ଯ୍ୟ ହରିହର ଦାସ, ଗୋପବନ୍ଧୁ ଚୌଧୁରୀ, ଜଗନ୍ନାଥ ଦାସ ଆଦି ଦେଶ ତଥା କଂଗ୍ରେସ ବିଷୟକ ଶିକ୍ଷା ଦେଉଥିଲେ । ଗୋଦାବରୀଙ୍କ ବେଶଭୂଷା,

ପୋଷାକ ପରିଚ୍ଛଦ ଅନ୍ୟମାନଙ୍କ ତୁଳନାରେ ଭଲ ନଥିବାରୁ କମାଣ୍ଡର ତାଙ୍କୁ ହେୟଜ୍ଞାନ କରୁଥିଲେ । ମାତ୍ର ପରବର୍ତ୍ତୀ କାଳରେ ନିଜର ଆଚାର ଓ ବ୍ୟବହାର ବଳରେ ସେ କମାଣ୍ଡରଙ୍କ ଏତାଦୃଶ ମନୋଭାବ ବଦଳାଇ ପାରିଥିଲେ । ଏତକ ନୁହେଁ କେତେଜଣ ସହକର୍ମୀମାନଙ୍କ ଠାରୁ ମଧ ସେ ଭଲ ବ୍ୟବହାର ପାଉନଥିଲେ । ଏହାକୁ ନିଜ କୃତକର୍ମ ଭାବି ସେ ଚୁପ୍ ରହୁଥିଲେ । ଗାନ୍ଧୀ-ଇରୁଇନ ଚୁକ୍ତି ସଫଳ ନ ହେବାରୁ ନେତୃବର୍ଗ ପୁଣି କାରାବରଣ କଲେ । ପୁରୀରେ କଂଗ୍ରେସ ଅଧିବେଶନ ଆଉ ହୋଇ ପାରିଲା ନାହିଁ । ଅଭ୍ୟର୍ଥନା ସମିତିକୁ ଭାଙ୍ଗି ଦିଆଯାଇ ସ୍ୱେଚ୍ଛାସେବୀ ତାଲିମ ଶିବିର ବନ୍ଦ କରି ଦିଆଗଲା । ଚଡ଼କ ପଡ଼ିଲା ଗୋଦାବରୀଙ୍କ ମୁଣ୍ଡରେ । ଶିବିର ଚାଲିଥିବାବେଳେ ତାଙ୍କ ପରିଚୟ ପାଇ ଗୋପବନ୍ଧୁ ଚୌଧୁରୀ କହିଥିଲେ, ''ଭଲ ବାପାଟ ଏବେ ପାଇଲୁ, ଆଉ ଚିନ୍ତା କ'ଣ ?'' ତେଣୁ ଶିବିର ଭଙ୍ଗାଯିବା ଦିନ ରମାଦେବୀଙ୍କୁ ସେ ନିଜକଥା ଜଣାଇଲେ । ପରେ ସେମାନଙ୍କ ସହିତ କଟକ ଯିବାପାଇଁ ତାଙ୍କୁ କୁହାଗଲା ।

କଟକରେ ପହଞ୍ଚି ଗୋପବନ୍ଧୁ ଚୌଧୁରୀଙ୍କ ପରିବାରରେ ଝିଅପରି ରହିଲେ । ଡାକିଲେ, ଗୋପବନ୍ଧୁ ଚୌଧୁରୀଙ୍କୁ 'ବାପା' ଓ ରମାଦେବୀଙ୍କୁ 'ବୋଉ' ବୋଲି । ୧୯୩୧ ମସିହା ଶେଷରେ ଆରମ୍ଭ ହେଲା ଆଇନ ଅମାନ୍ୟ ଆନ୍ଦୋଳନ । ଏଥିରେ ଭାଗ ନେଇ ଗୋପବନ୍ଧୁ ଚୌଧୁରୀ, ରମାଦେବୀ ଆଦି ଜେଲବରଣ କଲେ । କଟକର ସ୍ୱରାଜ ଆଶ୍ରମରେ ତାଲା ପଡ଼ିଲା । ଶୋଭାଦେବୀ, ହାରାମଣି ଦେବୀ ପ୍ରଭୃତି ଅନ୍ୟ ନାରୀକର୍ମୀମାନେ ମଧ ଇଂରେଜ ସରକାର ବିରୋଧୀ ପରିପତ୍ର ବାଣ୍ଟି, ମଦ, ଅଫିମ, ଗଞ୍ଜେଇ ଦୋକାନ ଆଗରେ ବିକ୍ଷୋଭ ପ୍ରଦର୍ଶନ କରି ଜେଲ୍‌ବରଣ କଲେ । ସେ କିନ୍ତୁ ସେତେବେଳେ ଜେଲ ବରଣ କରିବାକୁ ଚାହିଁଲେ ନାହିଁ । କାରଣ ଜେଲ ବିଷୟରେ ତାଙ୍କ ମନରେ ବିଚିତ୍ର ଏବଂ ଭିନ୍ନ ଧାରଣା ସବୁଥିଲା । ରମାଦେବୀଙ୍କ ନିର୍ଦ୍ଦେଶରେ ସେ ତାଲିମ ଶିବିରର ଜଣେ ମହିଳାକର୍ମୀଙ୍କ ସହିତ ଗାଁକୁ ଗଲେ । ଗାଁରେ ସେ ଲାଲ ବିହାରୀ ପଟ୍ଟନାୟକଙ୍କ ପତ୍ନୀ ବିଷ୍ଣୁପ୍ରିୟା ଦେବୀଙ୍କ ସହିତ ମିଶି ଆଖପାଖ ଅଞ୍ଚଳରେ କଂଗ୍ରେସର ବାର୍ତ୍ତା ପ୍ରଚାର କରିବାକୁ ଲାଗିଲେ ଓ କଂଗ୍ରେସ ପାଇଁ ବୁଲି ବୁଲି ଚାନ୍ଦା ସଂଗ୍ରହ କଲେ । ସେତେବେଳେ ସେମିତି କେହି ଚାନ୍ଦା ଦେଉ ନଥିଲେ । ଅଧିକନ୍ତୁ ଯିଏ ଏମାନଙ୍କୁ ସାହାଯ୍ୟ କରୁଥିଲେ ସେମାନଙ୍କୁ ଅସୁବିଧାରେ ସମ୍ମୁଖୀନ ହେବାକୁ ପଡୁଥିଲା । ଦିନେ ସେମାନେ ଯାଜପୁରର ତତ୍କାଳୀନ ଲୋକାଲବୋର୍ଡ଼ ଚେଆରମେନ୍ ହରିବଲ୍ଲଭ ଦାସଙ୍କ ଘରୁ ଫେରୁଥିବାବେଳେ ବର୍ଷା ହେଲା । ଏମାନେ ବର୍ଷାରେ ଭିଜୁଥିବାର ଦେଖି ତାଙ୍କରି ଗାଁର ଅଇଲା ମା' ପୁଅ ସାଧୁଆ ଛତାଟିଏ ଆଣିଦେଲା । ସାଧୁଆ ସେତେବେଳେ ଲୋକାଲ ବୋର୍ଡ଼ରେ କାମ କରୁଥିଲା । ଏଇ ଛତା ଆଣି ଦେଇ ସେମାନଙ୍କୁ ସାହାଯ୍ୟ କରିଥିବା ଯୋଗୁଁ ତାକୁ ଚାକିରି ହରାଇବାକୁ ପଡ଼ିଲା । କିଛି ଦିନପରେ ରମାଦେବୀଙ୍କ ନିର୍ଦ୍ଦେଶରେ ସେ ପୁଣିଥରେ କଟକ ଗଲେ ।

କେତେଜଣ କଂଗ୍ରେସର ନାରୀକର୍ମୀ ଗୋପବନ୍ଧୁ ଚୌଧୁରୀଙ୍କ ଘରେ ରହୁଥିବା ଖବର ସେତେବେଳକୁ ପୋଲିସ୍ ପାଖରେ ପହଞ୍ଚି ସାରିଥାଏ । ଏଥିପାଇଁ ତାଙ୍କ ଘରେ ପୋଲିସ୍ ଚାବି ପକାଇବାକୁ ସ୍ଥିର କରିଥିଲା । ଏଣୁ ରମାଦେବୀ, ଗୋଦାବରୀଙ୍କ ରହିବା ବନ୍ଦୋବସ୍ତ ଡାକ୍ତର ରଜନୀକାନ୍ତ ଘୋଷଙ୍କ ଘରେ କଲେ । ସେଠାରେ ଶୋଭାନାମ୍ନୀ ଜଣେ କର୍ମୀମଧ୍ୟ ଆଗରୁ ରହୁଥିଲେ । ଦୁହିଁଙ୍କୁ ପିଲାଙ୍କ ପଢ଼ାଘରେ କବାଟ ବନ୍ଦକରି ଦିନସାରା ରହିବାକୁ ହୁଏ । କାରଣ ସେଠାରେ ସେ ଦୁହେଁ ରହୁଥିବାର ଖବର ସାଇ ପଡ଼ିଶା ଜାଣିଗଲେ ମଧ୍ୟ ପୋଲିସକୁ ଖବର ମିଳିବା କଷ୍ଟ ହେବ ନାହିଁ । କାଳେ ପୋଲିସ୍ ତାଙ୍କ ଘର ଜବତ କରିନେବ ସେଥିପାଇଁ ରଜନୀବାବୁଙ୍କ ସ୍ତ୍ରୀ ଆଶାଦେବୀ ମଧ୍ୟ ଭୟ କରୁଥାନ୍ତି । ଅବଶ୍ୟପରେ ସେଇ ଆଶାଦେବୀ ସ୍ୱାଧୀନତା ସଂଗ୍ରାମରେ ଯୋଗଦେଇ କାରାବରଣ କରିଥିଲେ । ସେହିଠାରେ ରହିଥିବାବେଳେ ସେମାନେ ଦୁଇ ତିନିଥର ମଦ ଦୋକାନ ଓ ଲୁଗା ଦୋକାନ ଆଗରେ ବିକ୍ଷୋଭ ପ୍ରଦର୍ଶନ କରିବାକୁ ଯାଇଥିଲେ ।

ଆଶାଦେବୀଙ୍କର ଭୟଯୋଗୁଁ ପୁଣିଥରେ ରହିବା ଜାଗା ବଦଳାଇବାକୁ ପଡ଼ିଲା । ସେମାନେ ଯାଇ ରହିଲେ ତେଲେଙ୍ଗା ବଜାରର ରଘୁନାଥ ଜୀଉ ମନ୍ଦିର ଓ ରାସ ବିହାରୀ ମଠ ମଧ୍ୟସ୍ଥିତ କୃଷ୍ଣ ଚନ୍ଦ୍ର ପ୍ରଧାନଙ୍କ ଘରେ । ଆଗରୁ ତାଙ୍କ ଘରେ ଅଧରମଣି ଦେବୀ (ପରେ ଓଡ଼ିଶାର ପୂର୍ବତନ ବାଚସ୍ପତି ନନ୍ଦ କିଶୋର ଦାସଙ୍କ ପତ୍ନୀ) ସେଠାରେ ରହୁଥିଲେ । ଏ' ଦୁଇଜଣ ସେଠାରେ ପହଞ୍ଚିବା ପରେ ସଂଖ୍ୟା ବଢ଼ି ତିନିହେଲା । କୃଷ୍ଣବାବୁଙ୍କ ସ୍ତ୍ରୀ କନକ ଦେବୀଙ୍କର ମଧ୍ୟ ପୋଲିସ୍ ଭୟ ରହିଥିଲା । ତାଙ୍କଘରେ ଏମାନେ ଦିନରେ କବାଟ ବନ୍ଦ କରି କାମ ଦାମ କରନ୍ତି । ଦିନେ ନିର୍ଦ୍ଦେଶ ଆସିଲା, ସନ୍ଧ୍ୟାବେଳେ ବଜାରକୁ ଯାଇ ସେଠାରେ ବିକ୍ଷୋଭ ପ୍ରଦର୍ଶନ କରିବା ସହିତ ପ୍ରଚାରପତ୍ର ବାଣ୍ଟିବାପାଇଁ । ଏମାନେ ଘରୁ ବାହାରିବା ବେଳେ ଗୃହକର୍ତ୍ତ୍ରୀଙ୍କ ତରଫରୁ ଜଣାଇ ଦିଆଯାଇଥିଲା ଆଉ ସେଠାକୁ ନ ଆସିବାକୁ । ସେମାନେ ଚୌଧୁରୀ ବଜାରରେ ପ୍ରଚାର ପତ୍ର ବାଣ୍ଟିଲେ । ଭିଡ଼ ଭିତରୁ ଜଣେ ସାଧାରଣ ଲୋକ ପରି ଦିଶୁଥିବା ଲୋକଟିଏ ଆସି ଅଧରମଣିଙ୍କ ହାତରୁ ପ୍ରଚାରପତ୍ରର କାଗଜଗୁଡ଼ିକ ଛଡ଼ାଇ ନେଲା । ଲୋକଜଣକ ସାଦା ପୋଷାକଧାରୀ ପୁଲିସ୍ ବା ଅସାମାଜିକ ଲୋକ ଥିଲା । ଅଧରମଣିଙ୍କ ହାତରୁ ପ୍ରଚାରପତ୍ରଗୁଡ଼ିକ ଛଡ଼ାଇ ନେବାପରେ ସେ ଗୋଦାବରୀଦେବୀଙ୍କ ଆଡ଼କୁ ହାତ ବଢ଼ାଇଲା । ଗୋଦାବରୀ ଦେବୀ ପ୍ରଚାରପତ୍ରଗୁଡ଼ିକୁ ଲୋକମାନଙ୍କ ଭିତରେ ଖେଳାଇ ପକାଇ ଦେଲେ । ସେତିକିବେଳେ କିଛି ସମୟପାଇଁ ସେଠାରେ ଭିଡ଼ ଲାଗିଗଲା । ତା'ପରେ ଯିଏ ଯେଉଁଆଡ଼େ ଚାଲିଗଲେ । ଏତିକିବେଳେ ସେମାନଙ୍କର ଚିନ୍ତା ପଡ଼ିଲା; କେଉଁଠାରେ ଯାଇ ରହିବେ ? ଜଣେ କର୍ମୀଭାଇ ସେଠାରେ ପହଞ୍ଚିଲେ । ଗୋଦାବରୀ ପରାମର୍ଶ ଦେଲେ ରମାଦେବୀଙ୍କ ପାଖକୁ ଯିବାପାଇଁ ଓ ତାଙ୍କରି ନିର୍ଦ୍ଦେଶାନୁସାରେ କାମ କରିବା ପାଇଁ ।

ରମା ଦେବୀଙ୍କ ଘରକୁ ସେତେବେଳେ ସି.ଆଇ.ଡ଼ି. ଜଗିଥାଏ । ସେମାନଙ୍କ ମୁଣ୍ଡକୁ ଗୋଟିଏ ବୁଦ୍ଧି ଜୁଟିଲା । ମେହେନ୍ତରାଣୀ ପାଇଖାନାରୁ ମଇଳା ନେବା ପାଇଁ ଯାଉଥିବା ପାଚିରୀର ଗଳିବାଟ ଦେଇ ସେମାନେ ନଇଁ ନଇଁ ଯାଇ ତାଙ୍କ ଘର ଅଗଣାରେ ପହଞ୍ଚିଲେ । ଏମାନେ ପହଞ୍ଚିବା ମାତ୍ରେ ବୁଢ଼ୀ ମା' ଉଚ୍ଚ ସ୍ୱରରେ କହିଲେ ଘରୁ ବାହାରି ଯିବାପାଇଁ । ସେ କହିଲେ, 'ତୁମମାନଙ୍କର କ'ଣ ଇଚ୍ଛା; ପୋଲିସ୍ ମୋ ଘରେ ଚାବି ପକାଉ ବୋଲି । ବାହାର ଏଠୁ !' ଯେଉଁ ବାଟରେ ଭିତରକୁ ଯାଇଥିଲେ ସେହିବାଟ ଦେଇ ଏମାନେ ଫେରି ଆସିଲେ । ଠିଆ ହୋଇ ରହିଲେ ଅଧଘଣ୍ଟାଏ ଖଣ୍ଡେ ସନସାଇନ ପଡ଼ିଆର ପାଚେରୀ କଡ଼ରେ । ମଶା ଡାଆଁସ କାମୁଡୁଥାନ୍ତି । ସେଠାରେ ଠିଆ ହୋଇ ନପାରି ସେମାନେ ଗଲେ ଚୌଧୁରୀ ନିବାସର ଦକ୍ଷିଣପଟରେ ଥିବା କାଠଯୋଡ଼ିର ବନ୍ଧ ଉପରକୁ । ରାତି ପ୍ରାୟ ସାଢ଼େ ଦଶଟା ଯାଏ ଚୌଧୁରୀ ନିବାସରେ ଆଲୁଅ ଜଳୁଥିବାରୁ ଓ ଲୋକମାନେ କଥାବାର୍ତ୍ତା ହେଉଥିବାରୁ ସେଠାରେ ଆଶ୍ରା ନ ମିଳିଲେ ମଧ ଅପେକ୍ଷା କରିବାର ସାହସ ସତେ ଯେମିତି ସେଠାରୁ ମିଳୁଥିଲା । କିନ୍ତୁ ସେ ଘରେ ଆଲୁଅ ଲିଭିଯିବା ପରେ ଭୟ ମାଡ଼ି ଆସିଲା । ଏମାନଙ୍କ ପାଇଁ ଆଶ୍ରା ଖୋଜୁଥିବା କର୍ମୀଜଣକ ପ୍ରାୟ ରାତି ଗୋଟିଏବେଳେ ଆସି ପହଞ୍ଚିଲେ ସେମାନଙ୍କ ପାଖରେ । ଜଣେ ଭଦ୍ରଲୋକଙ୍କ ଘରକୁ ନେଇଗଲେ ସାଙ୍ଗରେ । ସେହିଘରେ ରହୁଥିବା ଭଦ୍ରଲୋକଜଣକ ଜାତୀୟତାବାଦୀ ଥିଲେ । ଖଦିପିନ୍ଧୁଥିବା ସେହି ଭଦ୍ରଲୋକ ଜଣକ ଟିଉସନକରି ଜୀବିକା ନିର୍ବାହ କରୁଥିଲେ । ବାହାରଘରେ ଏମାନଙ୍କୁ ବସାଇ ସରବତ ପିଇବାକୁ ଦେଲେ । କର୍ମୀଭାଇ ଜଣକ ପୁଣି କୁଆଡ଼େ ଚାଲିଗଲେ । ପ୍ରାୟ ଅଧଘଣ୍ଟାଏ ପରେ ଆସି ସେ ଏମାନଙ୍କୁ ନେଇ ଗଲେ ତଳତେଲେଙ୍ଗାବଜାରର ରାଧୁବାବୁଙ୍କ ଘରକୁ । ସ୍ୱାଧୀନ ଭାରତର ସନ୍ତାନ ସନ୍ତତିମାନେ ସ୍ୱାଧୀନତାର ସମସ୍ତ ସୁଖ ସୁବିଧା ଏବେ ଉପଲବ୍ଧି କରୁଛନ୍ତି ମାତ୍ର ଚହୁକଷ୍ଟ ସ୍ୱୀକାର କରି ଅନ୍ୟ ସଂଗ୍ରାମୀମାନଙ୍କ ସମେତ ଓଡ଼ିଶାର ନାରୀ କର୍ମୀମାନେ ମଧ ଏହି ସ୍ୱାଧୀନତା ପ୍ରାପ୍ତି ପାଇଁ କିପରି ଜୀବନ ଉତ୍ସର୍ଗ କରିଥିଲେ ଓ ଅପମାନ, ଲାଞ୍ଛନା ସହିଥିଲେ ତାହା ଗୋଦାବରୀ ଦେବୀଙ୍କ ଜୀବନଚର୍ଯ୍ୟାରୁ ସହଜରେ ଅନୁମେୟ ।

ଅନେକ ସ୍ଥଳରେ ବିରୋଧ ସତ୍ତ୍ୱେ ଗୋଟିଏ ଗୋଟିଏ ପରିବାରରେ ସଂଗ୍ରାମୀମାନଙ୍କୁ ମିଳୁଥିଲା ଆବଶ୍ୟକୀୟ ପ୍ରୋତ୍ସାହନ ଏବଂ ସ୍ୱାଚ୍ଛନ୍ଦ୍ୟ । ସେମିତିକା ପରିବାରଟିଏ ଥିଲା ରାଧୁବାବୁଙ୍କର । ଗୋଦାବରୀଙ୍କ ସମେତ ମହିଳା ସଂଗ୍ରାମୀ ତିନିଜଣ ତଳ ତେଲେଙ୍ଗା ବଜାରସ୍ଥ ରାଧୁବାବୁଙ୍କ ଘରେ ପହଞ୍ଚିଲା ବେଳକୁ କବାଟ ଖୋଲାରଖି ତାଙ୍କ ମା ଓ ସ୍ତ୍ରୀ ଅପେକ୍ଷା କରି ବସିଥିଲେ । ପହଞ୍ଚିବା ମାତ୍ରେ ଖୁସି ହୋଇ ଏମାନଙ୍କୁ ପାଛୋଟି ନେଲେ । ତାଙ୍କ ସ୍ତ୍ରୀ କୂଅରୁ ପାଣି କାଢ଼ି ଏମାନଙ୍କୁ ଧୁଆଧୋଉ ହେବା ପାଇଁ କହିଲେ । ଖାଇବାପାଇଁ ପଖାଳ ଓ ଗୋଡ଼ିଆକୁ ଭଜା ବାଢ଼ିଦେଲେ । ସ୍ନେହଭରା ହୃଦୟରେ ବଢ଼ା ହୋଇଥିବା ଖାଇବା ଜିନିଷତକ ସେମାନଙ୍କୁ

ଅମୃତତୁଲ୍ୟ ଲାଗିଥିଲା । ସେତେବେଳେ ତାଙ୍କ ଘରେ ପ୍ରତିଦିନ ଗୋଟିଏ ଧାନଉଁଷା କରେଇରେ କରେଇଏ ଆଳୁଭଜା ଓ ବଡ଼ ହାଣ୍ଡିରେ ଦୁଇତିନିହାଣ୍ଡି ପଖାଳ ମହଜୁଦ ଥାଏ । କର୍ମୀମାନଙ୍କୁ ଭୋକକଲେ ସେମାନେ ଯାଇ ସେଠାରୁ ଖାଇ ଦେଇ ଆସନ୍ତି ।

ରାଧୁବାବୁଙ୍କ ପରିବାରର ସ୍ନେହ ଶ୍ରଦ୍ଧାରେ କର୍ମୀମାନେ ବାନ୍ଧି ହୋଇଯାଇଥିଲେ । ଗୋଟିଏ ତେଜରାତି ଦୋକାନର ମାଲିକଥିଲେ ରାଧୁବାବୁ । ଗାଁର ଜମିରୁ କିଛିଧାନ ଆସୁଥିଲା । କିନ୍ତୁ ସେ ତଥା ତାଙ୍କର ସ୍ତ୍ରୀ ଓ ମା' ଦେଶପ୍ରେମୀ, ଅତିଥିପରାୟଣ ଓ ଉଦାର ହୃଦୟର ହୋଇଥିବାରୁ କର୍ମୀମାନଙ୍କର ସୁଖ ସ୍ୱାଚ୍ଛନ୍ଦ୍ୟପାଇଁ ତାଙ୍କର ସୀମିତ ଆୟରୁ ମଧ୍ୟ ଖର୍ଚ୍ଚ କରୁଥିଲେ । ସେମାନଙ୍କର ସୁଖ ସ୍ୱାଚ୍ଛନ୍ଦ୍ୟ ପାଇଁ ମଧ୍ୟ ବେଳେବେଳେ ତାଙ୍କର ସ୍ନେହପ୍ରବଣା ସ୍ତ୍ରୀ ଏପରି ଖର୍ଚ୍ଚ କରୁଥିଲେ ଯେ ସେ ପ୍ରକାର ଉଦାରତାର ପଟାନ୍ତର ନାହିଁ । କଟକ ସହରର ଅନ୍ୟତମ କଂଗ୍ରେସନେତା, ରାଜକୃଷ୍ଣ ବୋଷଙ୍କ ବିବାହ ଉପଲକ୍ଷେ ଜଣେ କର୍ମୀ ଆସି ସେଠାରେ ରହିଥିବା ମହିଳା କର୍ମୀ ତିନିଜଣଙ୍କୁ ଭୋଜି ପାଇଁ ନିମନ୍ତ୍ରଣ କରି ଦେଇଗଲେ । ସେମାନଙ୍କ ପାଇଁ ରାତିରେ ରୋଷେଇ କରିବାକୁ ରାଧୁବାବୁଙ୍କ ଘରେ ମନାକରିଦେଲେ । ଉପରବେଳାରୁ ପଖାଳ ଖାଇ ଦେଇ ସେମାନେ ଅପେକ୍ଷାରେ ରହିଲେ ନିମନ୍ତ୍ରଣ କରିଥିବା ବ୍ୟକ୍ତିଙ୍କ ବାଟ ଚାହିଁ । ସଂଧ୍ୟାବେଳେ ଛାତ ଉପରେ ଗଡ଼ପଡ଼ ହେଉ ହେଉ ନିଦ ଲାଗିଗଲା । ରାତି ପ୍ରାୟ ବାରଟାବେଳକୁ ସେମାନେ 'ଭାଉଜ' ବୋଲି ଡାକୁଥିବା ରାଧୁବାବୁଙ୍କ ସ୍ତ୍ରୀ ଆସି ଡାକିଲେ ଭୋଜି ଖାଇ ଯିବାକୁ । ସେମାନେ ନିଦ ଅଳସରୁ ଉଠି ମୁହଁ ହାତ ଧୋଇ ଖାଇବା ପାଇଁ ପିଢ଼ାରେ ବସି ଦେଖିଲେ, ଥାଳୀରେ ବଢ଼ା ଯାଇଛି- ପୁରୀ, କ୍ଷୀରି, ମିଠା, ଦୁଇ ତିନିପ୍ରକାର ତରକାରୀ ଓ ମାଛ ତରକାରୀ । ଏସବୁ କେଉଁଠୁ ଆସିଲା ବୋଲି ପଚାରିବାରୁ ରାଧୁବାବୁଙ୍କ ସ୍ତ୍ରୀ କହିଲେ, 'ଆଗେ ଖାଇସାର, ତା'ପରେ ପଚାରିବ ।' ଚୁଲି ପାଖରେ ରନ୍ଧା ବାସନ ସବୁ ଥୁଆ ହୋଇଥିବାର ଦେଖି ସେମାନେ ଲାଜରା ହୋଇଗଲେ । ଏପରି ଉଦାରତା ସହଜଲଭ୍ୟ ନୁହେଁ । ଏହି ଘଟଣା ବର୍ଣ୍ଣନା କରି ଗୋଦାବରୀ ନିଜେ କହିଛନ୍ତି, ''ଏପରି ଉଦାରତା ମୁଁ କେଉଁଠି ଦେଖିନାହିଁ । ମୋ ନିଜ ଭିତରେ ବି ନାହିଁ । ଦେଶ କାମ କଲାବେଳେ ଅନେକ ଦୁଃଖ କଷ୍ଟ ସହିବାକୁ ପଡ଼ିଛି । କୌଣସି କୌଣସିଠାରେ ଯେଉଁ ଶ୍ରଦ୍ଧା ଓ ମମତା ମିଳିଛି ତାହା ଅବିସ୍ମରଣୀୟ । ଆଜି ଦେଶର ନିର୍ବାଚିତ ମନ୍ତ୍ରୀ, ନେତୃବର୍ଗମାନେ କଳ୍ପନା କରିପାରିବେ ନାହିଁ ସ୍ୱରାଜସୌଧର ନିଅଁତଳର ଗୋଡ଼ିପଥରଙ୍କ କ'ଣ ଦାନ ଏଥିପାଇଁ ।''

ରାଧୁବାବୁଙ୍କ ଘରେ ଦେଢ଼ମାସ ପାଖାପାଖି ରହିବା ପରେ ଦିନେ ରମାଦେବୀ ସେଠାରେ ପହଞ୍ଚି ସେମାନଙ୍କୁ ଘରକୁ ଚାଲିଯିବା ପାଇଁ କହିଲେ । ଗୋଦାବରୀ ଦେବୀଙ୍କୁ ପୁରୁଷୋତ୍ତମପୁରର ବିଶିଷ୍ଟ ବ୍ୟକ୍ତି ନରେନ୍ଦ୍ର ଚନ୍ଦ୍ର ଘୋଷଙ୍କ ବୋହୂ ଅନୁପମାଙ୍କ ସହ ପଠାଇଲେ । ଶୋଭାଦେବୀଙ୍କ କଥା ବୁଝିବାକୁ ଥିଲେ ଅନ୍ତର୍ଯ୍ୟାମୀ ପଣ୍ଡା । ଅଧରମଣି ଦେବୀଙ୍କୁ

ନେଇଗଲେ ତାଙ୍କର ମାଉସୀ ପୁଅ ଭାଇ; ଡି.ଏସ୍.ପି. ରସିକ ପଟ୍ଟନାୟକ। ସିଏ ଅଧରମଣିଙ୍କୁ ନେବାବେଳେ ରମାଦେବୀଙ୍କ ବିରୁଦ୍ଧରେ ମୋକଦ୍ଦମା କରିବେ ବୋଲି ଧମକ ଦେଇଗଲେ। ଅନୁପମାଙ୍କ ସହିତ ପୁରୁଷୋତ୍ତମପୁରରେ ପହଞ୍ଚିବାପରେ ସେଠାରୁ ଆଉ ଜଣେ କର୍ମୀଙ୍କ ସାଙ୍ଗରେ ଯାଇ ଗୋଦାବରୀ ଗାଁରେ ପହଞ୍ଚିଲେ।

ଗାଁରେ ଚାରିମାସ ରହିବାପରେ ପୁଣି ଗୋପବନ୍ଧୁ ଚୌଧୁରୀଙ୍କଠାରୁ ଡାକରା ଆସି ପହଞ୍ଚିଲା। ସେତେବେଳକୁ ସେ ଜେଲରୁ ଖଲାସ ହୋଇ ଆସି ସାରିଥାନ୍ତି। ଆରମ୍ଭ ହେଲା ଖଦିକାମ। ଗାନ୍ଧିଜୀଙ୍କ ରଚନାତ୍ମକ କାର୍ଯ୍ୟଧାରାର ମୂଳମନ୍ତ୍ର ରୂପେ ଏହା ବିବେଚିତ। ଗୋପବନ୍ଧୁ ଚୌଧୁରୀ ଅଖିଳ ଭାରତ ଚରଖା ସଂଘ, ଓଡ଼ିଶା ଶାଖାର ସଭାପତି ଥିଲେ। ଗାଁରୁ ଏଥର ଖଦି କାମରେ ଭାଗନେବାପାଇଁ ସାଙ୍ଗରେ ଆସିଥିଲେ ସରଦୀବୋଉ ବଡ଼ମା' ଓ କୁମାରୀ ଦେବୀ। ବକ୍ସିବଜାରର ଗୋଟିଏ ଭଡ଼ାଘରେ ଏହି କାମ ଚାଲିଥିଲା। ଏମାନଙ୍କ ସହିତ ସାମିଲ ହେଲେ ଶୋଭା ଦେବୀ, ହରପ୍ରିୟା ଦେବୀ, ଛାୟାଦେବୀ ଏବଂ ହାରାମଣି ଦେବୀ। ଏମାନେ ଯାଆନ୍ତି ଖଦିତିଆରି ଜିନିଷ ବିକ୍ରି କରିବା ପାଇଁ। ସାଙ୍ଗରେ ଥାଏ ଗୋଟିଏ ଭାରିଆ ଓ ଗୁଣନିଧିବାବୁ ନାମକ ଜଣେ କର୍ମୀ। ସକାଳ ୮ଟାରୁ ୧୨ଟା ଓ ଉପରବେଳା ଦିନ ୩ଟାରୁ ସନ୍ଧ୍ୟା ୭ଟା ପର୍ଯ୍ୟନ୍ତ ସେମାନେ ସହରର ବସ୍ତିମାନଙ୍କରେ ବୁଲିବୁଲି ଖଦିର ପ୍ରସାର ଓ ବିକ୍ରିକାମ କରନ୍ତି। ଖ୍ରୀଷ୍ଟିୟାନ୍ ବସ୍ତିଗୁଡ଼ିକରେ ଖଦିର ଘୋଡ଼ାଇବା ଓ ବିଛାଇବା ଚାଦର କିଣିବା ପାଇଁ ବିଶେଷ ଆଗ୍ରହ ପରିଲକ୍ଷିତ ହେଉଥିଲା।

ଏତିକିବେଳେ ଭାରତର ସ୍ୱାଧୀନତା ସଂଗ୍ରାମ ଏକ ଭିନ୍ନ ମୋଡ଼ ନେଲା। ଜିନ୍ନା ସାହେବଙ୍କ ନେତୃତ୍ୱରେ କଂଗ୍ରେସରୁ ଅଲଗା ହୋଇ ମୁସ୍‌ଲିମ୍ ଲିଗ୍ ଗଠିତ ହେଲା। ପାକିସ୍ଥାନ ଗଠନ ପାଇଁ ଦାବିକଲେ ସେମାନେ। ଏପଟେ ଆମ୍ବେଦକର ଓ ସାପ୍ରୁ ସାହେବଙ୍କ ନେତୃତ୍ୱରେ ହିନ୍ଦୁମାନଙ୍କର ଅବିଚ୍ଛେଦ୍ୟ ଅଙ୍ଗ, ହରିଜନ ସମ୍ପ୍ରଦାୟ ସ୍ୱତନ୍ତ୍ର ନିର୍ବାଚନ ଦାବିକଲେ। ଏକଥା ଜେଲରେ ବନ୍ଦୀଜୀବନ କଟାଉଥିବା ଗାନ୍ଧୀଙ୍କୁ ଆଘାତ ଦେଲା। ହିନ୍ଦୁ ସମାଜରୁ ଅସ୍ପୃଶ୍ୟତା ଦୂରୀକରଣ ନିମିତ୍ତ ସେ ଅନଶନ କଲେ। ତାଙ୍କ ସମେତ ଅନ୍ୟ ନେତୃବର୍ଗଙ୍କୁ ମଧ ଖଲାସ କରିଦିଆଗଲା। ଗାନ୍ଧିଜୀଙ୍କର ଅନୁଗାମୀମାନେ ଅସ୍ପୃଶ୍ୟତା ବିରୋଧୀ ଆନ୍ଦୋଳନକୁ ସାକାର କରିବା ଲକ୍ଷ୍ୟରେ ସେମାନଙ୍କୁ ମନ୍ଦିର ପ୍ରବେଶାଧିକାର ଦେବା ନିମିତ୍ତ ଉଚ୍ଚବର୍ଣ୍ଣର ଲୋକମାନଙ୍କ ଠାରୁ ଦସ୍ତଖତ ସଂଗ୍ରହ କଲେ। ସେହି କାମରେ ସେମାନଙ୍କୁ ଘୂରିବାକୁ ହେଲା ଦିନରାତି। ସେତେବେଳକୁ ମାଳତୀ ଚୌଧୁରୀ ଭାଗଲପୁର ଜେଲରୁ ଖଲାସ ହୋଇ ଆସି ଏହି କାର୍ଯ୍ୟ ସଂଚାଳନ କରୁଥିଲେ। ପରେ ରମାଦେବୀ ଜେଲରୁ ଖଲାସ ହୋଇ ଆସିବାପରେ ତାଙ୍କରି ନେତୃତ୍ୱରେ ବାଲୁବଜାରର ଗୋଟିଏ ଘରେ ହରିଜନ ସେବକସଂଘର ଅଫିସ କାମ ଆରମ୍ଭ ହେଲା।

୧୯୩୪ ମସିହାରେ ଗାନ୍ଧିଜୀଙ୍କ ହରିଜନ ପଦଯାତ୍ରାବେଳେ ଗୋଦାବରୀ ଦେବୀ ତାଙ୍କ ପ୍ରତ୍ୟକ୍ଷ ସଂସ୍ପର୍ଶରେ ଆସିଥିଲେ । କଟକର ମେହେନ୍ତର ବସ୍ତିରେ ଅନ୍ୟକର୍ମୀମାନଙ୍କ ସହ କାମ କରୁଥିବାବେଳେ ଗୋଦାବରୀ, ହରିଜନ ସେବକ ସଂଘର ଯୁଗ୍ମ ସମ୍ପାଦକ ରମାଦେବୀଙ୍କଠାରୁ ଡାକରା ପାଇ ଯାଇ ପୁରୀଠାରେ ପହଞ୍ଚିଲେ । ଆରମ୍ଭ ହେଲା; ଗାନ୍ଧିଜୀଙ୍କ ଐତିହାସିକ ପଦଯାତ୍ରା । ଗାନ୍ଧିଜୀଙ୍କର ପୂର୍ବରୁ ସ୍ଥିର କରାଯାଇଥିବା କାର୍ଯ୍ୟକ୍ରମ ସବୁ ପରିବର୍ତ୍ତନ ହୋଇଗଲା । ଗାନ୍ଧିଜୀ ନିଜେ ମୋଟର ଯୋଗେ ବିଭିନ୍ନ ସ୍ଥାନକୁ ଯିବାର ଥିବା କାର୍ଯ୍ୟକ୍ରମକୁ ବଦଳାଇ ପଦଯାତ୍ରାରେ ଯିବେ ବୋଲି ଜଣାଇଲେ । ସେହି ପଦଯାତ୍ରାରେ ଅନ୍ନପୂର୍ଣ୍ଣା, ମଙ୍ଗଳା, ସୁଶୀଳା, ଶୋଭା, ମାଣିକ, ତୁଳସୀ ଆଦିଙ୍କ ସାଙ୍ଗରେ ଗୋଦାବରୀ ବି ଯୋଗଦେଲେ । ସେମାନେ ପଦଯାତ୍ରୀମାନଙ୍କ ପାଇଁ ରୋଷେଇ କାମରେ ସାହାଯ୍ୟ କରିବା ସଙ୍ଗେ ସଙ୍ଗେ ହରିଜନ ବସ୍ତିକୁ ଯାଇ ପଂକ୍ତି ଭୋଜନ ପାଇଁ ବସ୍ତିର ପିଲାମାନଙ୍କୁ ଆଣୁଥିଲେ । ସେମାନଙ୍କୁ ଖୁଆଇବା ଏବଂ ପରିଷ୍କାର ପରିଚ୍ଛନ୍ନ କରିବାର ଦାୟିତ୍ୱ ନିର୍ବାହ କରୁଥିଲେ । କିନ୍ତୁ ଗୋଦାବରୀଙ୍କୁ ତୁଲାଇବାକୁ ପଡ଼ିଲା ଆଉ ଏକ ଗୁରୁ ଦାୟିତ୍ୱ । ଗୋପବନ୍ଧୁ ଚୌଧୁରୀ ଏବଂ ରମାଦେବୀଙ୍କର ସେହି ଗେହ୍ଲା ସୁନାନାକୀ ଝିଅକୁ ଦିଆଗଲା ଗାନ୍ଧିଜୀଙ୍କୁ ଓଡ଼ିଆ ପଢ଼ାଇବାର ଦାୟିତ୍ୱ । ମଧୁସୂଦନ ରାଓଙ୍କ ବର୍ଣ୍ଣବୋଧ ଧରି ଗୋପବନ୍ଧୁ ଚୌଧୁରୀଙ୍କ ସହାୟତାରେ ସେ ତାଙ୍କୁ ଓଡ଼ିଆ ଅକ୍ଷର ଓ ଶବ୍ଦ ଶିକ୍ଷା ଦେଇଥିଲେ । କି ସୌଭାଗ୍ୟବତୀ ନଥିଲେ ସେ ! ଜାତିର ଜନକ, ମହାତ୍ମାଗାନ୍ଧୀଙ୍କ ଶିକ୍ଷୟିତ୍ରୀ ହୋଇ ପାରିଥିଲେ ଗୋଦାବରୀ ଦେବୀ । ସତରେ ସେ ଥିଲେ ଜଣେ ଆଦର୍ଶ ଶିକ୍ଷୟିତ୍ରୀ । ପିଲାବେଳେ ବିଦ୍ୟାଳୟରେ ପାଠ ପଢ଼ିବାର ଅଦମ୍ୟ ଆଗ୍ରହ ସିନା ତତ୍କାଳୀନ ସମାଜବ୍ୟବସ୍ଥା ଯୋଗୁଁ ତଥା ଦେଶପାଇଁ ତ୍ୟାଗ ଯୋଗୁଁ ତାଙ୍କର ସାକାର ହୋଇ ପାରିନଥିଲା ମାତ୍ର ସେ ଲାଭ କରିଥିବା ସତ୍‌ଶିକ୍ଷା, ଗଭୀର ଜୀବନାନୁଭୂତି ସର୍ବୋପରି ତାଙ୍କର ତ୍ୟାଗଭରା ଓ ସେବାପୂର୍ଣ୍ଣ ଜୀବନଧାରାର ନିଦର୍ଶନ, ଚିରକାଳ ଆମର ଶିକ୍ଷଣୀୟ ଓ ଧ୍ୟେୟ ହୋଇ ରହିବ ।

ଏହାପରେ ପରେ ୧୯୩୮ ମସିହା ନଭେମ୍ବର ମାସରେ ତାଳଚେର ଠାରେ ସଂଗ୍ରାମୀ ପବିତ୍ର ମୋହନ ପ୍ରଧାନଙ୍କ ନେତୃତ୍ୱରେ ପ୍ରଜାମଣ୍ଡଳ ଆନ୍ଦୋଳନ ଆରମ୍ଭ ହୋଇଗଲା । ଅନୁଗୁଳ ଅଞ୍ଚଳରେ ପ୍ରଜା-ଆନ୍ଦୋଳନ ଦମନ ନିମିତ୍ତ ଉଦ୍ଦିଷ୍ଟ ଅତ୍ୟାଚାର ଫଳରେ ସେ ଅଞ୍ଚଳର ପ୍ରାୟ ପଚିଶ ହଜାର ବାସିନ୍ଦା ଶରଣାର୍ଥୀରେ ପରିଣତ ହେଲେ । ସେହି ଶରଣାର୍ଥୀମାନଙ୍କର ସେବା ଦାୟିତ୍ୱର ନେତୃତ୍ୱ ନେଲେ ରମାଦେବୀ । ସେଥିରେ ଅନ୍ୟତମ କର୍ମୀରୂପେ ଯୋଗ ଦେଇ ଶରଣାର୍ଥୀମାନଙ୍କର ସେବା ଶୁଶ୍ରୂଷା ଦାୟିତ୍ୱ ଗୋଦାବରୀ ଦେବୀ ତୁଲାଇଲେ । ପରିଶେଷରେ ପ୍ରଜାମଣ୍ଡଳର ବିଜୟ ହେଲା । ରାଜା କେତୋଟି ଅନ୍ୟାୟକର ଉଠାଇ ନେବାକୁ ବାଧ ହେଲେ । ସେଠାରେ ଥିବାବେଳେ ଅସହାୟା ବୁଢ଼ୀଲୋକଟିଏ ସେମାନଙ୍କର କାମ କରୁଥିଲା । ଦିନସାରା

ସେ ଘରଯାକର କାମ କରେ । ଦୂର ପୋଖରୀ ବନ୍ଧରୁ, ପାଞ୍ଚ, ଛ'ଜଣ ଲୋକଙ୍କର ଗାଧୋଇବା ଏବଂ ବ୍ୟବହାର ପାଇଁ ପାଣି ଆଣିଦିଏ । ମଜୁରି ତା'ର ଥିଲା ଛ'ପଇସା । ଗୋଦାବରୀଙ୍କ ଦ୍ୱାରା ତା'ର ମଜୁରି ଛ' ପଇସାରୁ ଆଠ ପଇସାକୁ ବଢ଼ିଯିବାରୁ ସେ ଅଜାଡ଼ି ଦେଇଥିଲା ଅନେକ ଆଶୀର୍ବାଦ ତାଙ୍କ ଉପରେ । ମନତାର ଖୁସିରେ ଭରି ଯାଇଥିଲା । ସେଠାକାର କାମ ସରିଯିବାପରେ, ପ୍ରଜାମଣ୍ଡଳର ବିଜୟଲାଭ ଉପରାରେ ସେ ବରୀ ଆଶ୍ରମକୁ ଫେରିଥିଲେ ।

ସାତ ବର୍ଷର ପିଲାଙ୍କପାଇଁ ମୌଳିକ ଶିକ୍ଷା ପ୍ରବର୍ତ୍ତନ କରାଇବାକୁ ମହାତ୍ମାଗାନ୍ଧୀ ଚାହିଁଲେ । ଡଃ ଜାକିର୍ ହୁସେନ୍, ଆଶା ଦେବୀ, ଆର୍ଯ୍ୟ ନାୟକମ୍, ଜେ.ବି. କୃପାଲିନୀ ପ୍ରଭୃତିଙ୍କଦ୍ୱାରା ମୌଳିକ ଶିକ୍ଷାର ପଦ୍ଧତି ପ୍ରଣୀତ ହେଲା । ୱାର୍ଦ୍ଧାରେ ଗୁରୁ ତାଲିମ କେନ୍ଦ୍ର ଖୋଲାଯାଇ ସବୁ ପ୍ରଦେଶର ଶିକ୍ଷକମାନଙ୍କୁ ତାଲିମ ଦିଆଗଲା । ଆମ ଓଡ଼ିଶାରୁ ଶରତ ଚନ୍ଦ୍ର ମହାରଣା, ଲାଲ ବିହାରୀ ପଟ୍ଟନାୟକ, ଶ୍ୟାମ ସୁନ୍ଦର ମିଶ୍ର, ଫକୀର ମିଶ୍ର ଓ ଅନ୍ନପୂର୍ଣ୍ଣା ମହାରଣା ପ୍ରଭୃତି ତାଲିମ ପାଇ ସେଠାରୁ ଫେରିଲେ । ବ୍ରାହ୍ମଣୀନଦୀ କୂଳର ବରୀଠାରେ 'ରାମଚନ୍ଦ୍ରପୁର' ଗାଁ ନିକଟରେ ମୌଳିକ ଶିକ୍ଷା କେନ୍ଦ୍ରର ଘର ତିଆରି ହୋଇ ଗୁରୁଛାତ୍ରମାନଙ୍କୁ ତାଲିମ ଦିଆଗଲା । ତାହାରି ପାଖରେ ମୌଳିକ ସ୍କୁଲ ଓ ଛାତ୍ରାବାସର ମଧ୍ୟ ବ୍ୟବସ୍ଥା ହେଲା । ଏହି କେନ୍ଦ୍ରରେ ଗୋଦାବରୀ ଗୁରୁଛାତ୍ରୀ ରୂପେ ତାଲିମ ନେଲେ । ପିଲାଙ୍କୁ ଧନ୍ଦା ମାଧ୍ୟମରେ ଶିକ୍ଷା ଦେବା, ଆଦର୍ଶ ଜାତୀୟତା ଭାବରେ ଅନୁପ୍ରାଣିତ କରି ପିଲାର ବିଦ୍ୟା, ବୁଦ୍ଧି ଓ କର୍ମକୁଶଳତାର ଉତ୍କର୍ଷ ସାଧନ ଏହି ମୌଳିକ ଶିକ୍ଷାର ମୂଳ ଲକ୍ଷ୍ୟ ଥିଲା । ଶିକ୍ଷାଲାଭ ପରେ କୌଣସି ଛାତ୍ର ଚାକିରି ନ ପାଇଲେ ବି ପ୍ରାପ୍ତ ଶିକ୍ଷାଦ୍ୱାରା ସ୍ୱାବଲମ୍ବନଶୀଳ ନାଗରିକର ଜୀବନ ଯାପନ ପାଇଁ ସମର୍ଥ ହୋଇ ପାରିବ- ଏହାଥିଲା ଏତାଦୃଶ ଶିକ୍ଷାଦାନର ଉଦ୍ଦେଶ୍ୟ । 'ଅରଜାବାଦ' ଗାଁରେ ଖୋଲା ଯାଇଥିବା ମୌଳିକ ସ୍କୁଲରେ ସେ ତିନିମାସ ଶିକ୍ଷୟତ୍ରୀଭାବରେ ଦାୟିତ୍ୱ ନିର୍ବାହ କରିଥିଲେ । ଶିକ୍ଷକତାର ପାରିଶ୍ରମିକ ମାସକୁ ପନ୍ଦରଟଙ୍କା ହିସାବରେ ତିନିମାସକୁ ପଇଁଚାଳିଶଟଙ୍କା ଉପାର୍ଜନ କରିବା ଫଳରେ ତାଙ୍କ ମନରେ ଆନନ୍ଦ ଜାତ ହେବା ସଙ୍ଗେ ସଙ୍ଗେ ଆତ୍ମବିଶ୍ୱାସ ଦୃଢ଼ ହୋଇଥିଲା ।

ସଂଗ୍ରାମୁକ୍ତ ହୋଇ ଗାଁ ଗହଳିକୁ ଯାଇ ସେମାନଙ୍କଠାରୁ ମାଗି ଯାଚି ଖାଇ ଲୋକମାନଙ୍କର ସେବାକରିବା ପାଇଁ ଗାନ୍ଧିଜୀ କର୍ମୀମାନଙ୍କୁ ନିର୍ଦ୍ଦେଶ ଦେଲେ । ନିର୍ଦ୍ଦେଶାନୁସାରେ ଗୋଦାବରୀ ଯାଇ ପହଞ୍ଚିଲେ, ଶିକ୍ଷାଠାରୁ ବହୁଦୂରରେ ଥିବା ଅନୁନ୍ନତ ଚାଷୀଶ୍ରେଣୀର ଅଧିବାସୀ ଅଧ୍ୟୁଷିତ ଗାଁଟିଏରେ । ନଳିତା ଓ ଆଳୁଚାଷ ଉପରେ ନିର୍ଭର କରି ଜୀବିକାର୍ଜନ କରନ୍ତି ଏହି ଗାଁର ଲୋକମାନେ । ଗାଁଟି ରତ୍ନଗିରି ପାହାଡ଼ର କାଛି ଉପରେ ଅବସ୍ଥିତ । ଅଦୂରରେ ବ୍ରାହ୍ମଣୀ ଓ ବିରୂପାର ସରୁଧାରଟିଏ ବୋହି ଯାଇ ମିଶିଛି ବିରୂପାରେ ।

ଶୈବଧର୍ମ ଓ ବୌଦ୍ଧଧର୍ମର କୀର୍ତ୍ତି ଉଦ୍‌ଘୋଷିତ କରୁଛି ସେଠାରେ ଇତସ୍ତତଃ ପଡ଼ିଥିବା ଶିବଲିଙ୍ଗ, କାରୁକାର୍ଯ୍ୟ ଖଚିତ ବୌଦ୍ଧ ମୂର୍ତ୍ତି ଓ ପଦ୍ମହସ୍ତ ଜୟଶ୍ରୀ ମୂର୍ତ୍ତିଗୁଡ଼ିକ ।

କର୍ମୀ ଗୋବିନ୍ଦ ସାମଲଙ୍କ ସାଙ୍ଗରେ ଯାଇ ସେ ସେହି ଗାଁରେ ପହଞ୍ଚିଲେ । ବାଟରେ ଭେଟୁଥିବା ଲୋକମାନଙ୍କୁ ଗୋବିନ୍ଦବାବୁ କହି କହି ଚାଲୁଥାନ୍ତି ଯେ; 'ଏ ଭଉଣୀ ଆସିଛନ୍ତି, ଏଇ ଗାଁରେ ରହି ସେବା କାମ କରିବେ ।' କିନ୍ତୁ ଲୋକମାନେ ତାଙ୍କ କଥାକୁ କାନ ନ ଦେଇ ଯେଝା ବାଟରେ ଚାଲି ଯାଉଥାନ୍ତି । ଗାଁରେ ଗୋଟିଏ ଛୋଟିଆ ଘରେ ସେ ରହିବାର ସ୍ଥିର କରି ପରଦିନ ଜିନିଷପତ୍ର ଧରି ସେଇ ଗାଁରେ ପହଞ୍ଚିଲେ । ଜିନିଷପତ୍ର ଧରି ଆଗେ ଆଗେ ଭାରୁଆଟିଏ ଓ ପଛରେ ଗୋବିନ୍ଦବାବୁ ଏବଂ ଗୋଦାବରୀ ଚାଲିଥାନ୍ତି । ତାଙ୍କ ଗାଁକୁ ଜଣେ ଭଦ୍ରଘରର ଝିଅ ରହିବାକୁ ଆସୁଛନ୍ତି ଶୁଣି ସ୍ତ୍ରୀଲୋକମାନେ ଘରର ଦୁଆର ମୁହଁକୁ ଆସି ରାସ୍ତାକୁ ଅନାଉଥାନ୍ତି । ରାସ୍ତାକଡ଼ରେ ଦସ୍ତାଛପର ଥିବା ଘରଟିଏର ପିଣ୍ଡାରେ ଦୁଇଜଣଝିଅ ଓ ସେମାନଙ୍କ ମା' ଠିଆ ହୋଇଥିଲେ । ସେମାନେ ଇସାରାରେ ଡାକିଲେ ଗୋଦାବରୀଙ୍କୁ । ଗୋଦାବରୀ ସେମାନଙ୍କ ପାଖରେ ପହଞ୍ଚି ନିଜର ପରିଚୟ ଦେବା ସଙ୍ଗେ ସଙ୍ଗେ ଗାଁକୁ ତାଙ୍କର ଆସିବାର ଉଦ୍ଦେଶ୍ୟ ଜଣାଇଲେ । ସେମାନେ ସବୁ ଶୁଣିଲେ । ତାଙ୍କ ପାଇଁ ଠିକ୍ କରାଯାଇଥିବା ଘରଟି ଖରାପ ଟୋକାଙ୍କ ଆଡ୍‌ଡ଼ା ହୋଇଥିବାରୁ ସେଠାରେ ନରହିବାକୁ ପରାମର୍ଶ ଦେଲେ । ଝିଅ ଦୁହିଁଙ୍କ ମା' ପ୍ରସ୍ତାବ ଦେଲେ ତାଙ୍କ ଘରେ ରହିବାପାଇଁ, ମା' ଝିଅଙ୍କ ପାଖରେ ଶୋଇବାପାଇଁ । ଲୋକ ପଠାଇ ଭାରୁଆ ସେ ଘରକୁ ନେଇ ଯାଇଥିବା ଟ୍ରଙ୍କ ଓ ଚରଖା ତାଙ୍କ ଘରକୁ ନେଇ ଆସିଲେ । ସେଇ ଝିଅ ଦୁହିଁଙ୍କ ମା', ମାଉସୀ ହୋଇଗଲେ । ସେହି ପରିବାରର ସ୍ନେହରେ ବାନ୍ଧି ହୋଇଗଲେ ଗୋଦାବରୀ । ମାଉସୀଙ୍କର ବଡ଼ପୁଅ ଅନିରୁଦ୍ଧ ଜେନାଙ୍କ ସମେତ ତିନିପୁଅ, ବୋହୂ, ନାତି, ନାତୁଣୀ, ତାଙ୍କ ଯାଆଙ୍କର ତିନିପୁଅ, ଜଣେ ବୋହୂ ଓ ଚାକର ବାଙ୍କର ମିଶିଥିବା ବଡ଼ ପରିବାଟିର ଅନ୍ୟତମ ସଦସ୍ୟା ହୋଇଗଲେ ସେ । ମାଉସୀ, ଗୋଦାବରୀଙ୍କୁ ସାକ୍ଷୀ ରଖି ପୁଅମାନଙ୍କୁ ଅନୁରୋଧ କରି ସେ ବର୍ଷ ଦଶହରାର ଖଣ୍ଡାଖେଳପୂର୍ବରୁ ଲୋକମାନଙ୍କର ସୁଧ ଛାଡ଼ କରାଇଦେଲେ । ଅନୁରୂପ ଭାବରେ ସେ ସ୍ୱାମୀଙ୍କୁ ଅନୁରୋଧ କରି ଛାଡ଼ କରାଉଥିଲେ ଗରିବ ଖାତକମାନଙ୍କର ସୁଧ । ସେହି ଅପାଠୁଆ ମାଉସୀଙ୍କ ଧର୍ମାଚରଣ, ଆଦର୍ଶ ଜୀବନଧାରା ମଧ ଗୋଦାବରୀଙ୍କୁ ପ୍ରଭାବିତ କରିଥିଲା ।

ରହୁଥିବା ମାଉସୀଙ୍କ ଘରର ସ୍ତ୍ରୀଲୋକମାନଙ୍କୁ ଦି ପହରବେଳେ ଗୋଦାବରୀ ଗାନ୍ଧୀକଥା, ସ୍ୱରାଜ୍ୟ ସଂଗ୍ରାମ କଥା, ମୌଳିକ ସ୍କୁଲ କଥା ଶୁଣାନ୍ତି ଓ ପ୍ରତିବଦଳରେ ସେମାନଙ୍କଠାରୁ ରତ୍ନଗିରିର ଇତିହାସ, କିମ୍ବଦନ୍ତୀ ଆଦି ଶୁଣନ୍ତି । ଚାରିବୋହୂଯାକ ତାଙ୍କ ପ୍ରରୋଚନାରେ ୟରବାଡ଼ାଚକ୍ର ଚାରିଖଣ୍ଡ କିଣି ସୂତାକାଟିଲେ । ଗାଁର ଲୋକମାନଙ୍କ ଘରକୁ ଯାଇ ବାଉଁଶ ଚରଖାରେ ସୂତାକଟା ଶିଖାଇବା, ଦେଶକଥା ଆଲୋଚନା କରିବା ଆଦି

କାମ କରୁଥିଲେ । ସେହି ମାଉସୀଙ୍କ ଘରେ ଆଗରୁ ମାସକୁ ପାନଗୁଆ ବାବଦରେ ୫୦/୬୦ ଟଙ୍କା ଖର୍ଚ୍ଚ ହେଉଥିଲା । ପାନଗୁଆ ଖର୍ଚ୍ଚ ସେ ଘରେ ଗୋଦାବରୀ ରହିବାପରେ ଆପେଆପେ ବନ୍ଦ ହୋଇଗଲା । ରତ୍ନଗିରିରେ ଆଠମାସ ରହିବାପରେ ସେ ଫେରିଆସିଲେ ବରୀର ସେବାଘର ଆଶ୍ରମକୁ ।

ହରିଜନ ଆନ୍ଦୋଳନକୁ ଏବଂ ଗାନ୍ଧି ଚିନ୍ତାଧାରାକୁ ଲୋକମାନଙ୍କ ପାଖରେ ପହଞ୍ଚାଇବା ଉଦ୍ଦେଶ୍ୟରେ ସେତେବେଳେ ପଦଯାତ୍ରା କରାଗଲା । ଥରେ ସେବାଘର ଠାରୁ ପଦଯାତ୍ରାରେ ଯାଇ ଫେରିବା ପରେ ଗୋଦାବରୀ ଟାଇଫଏଡ଼ ଜ୍ୱରରେ ଆକ୍ରାନ୍ତ ହେଲେ । ରମାଦେବୀଙ୍କ ଅକ୍ଲାନ୍ତ ସେବାଯତ୍ନରେ ସେ ସୁସ୍ଥ ହେଲେ । ସୁସ୍ଥ ହେବା ପରେ ପରେ ସେ କିଛିଦିନ ପାଇଁ ନିଜ ଗାଁ, କଲ୍ୟାଣପୁରକୁ ଯାଇଥିଲେ । ଅଳ୍ପଦିନ ବ୍ୟବଧାନରେ ଖୁଡ଼ୀ ଓ ଦାଦାଙ୍କର କାଳ ହେଲା । ପରେ ପରେ ସାନଭାଇ ମଧୁର ବାହାଘର ହେଲା । ୧୯୪୨ ମସିହାରେ ଦେଶସାରା ଏକ ଭିନ୍ନ ବାତାବରଣ ସୃଷ୍ଟି ହେଲା । 'ଭାରତଛାଡ଼' ଆନ୍ଦୋଳନର ଝଡ଼ ସ୍ୱଦେଶପ୍ରେମୀ ଭାରତୀୟମାନଙ୍କୁ ପ୍ରଭାବିତ କଲା । ତୁଙ୍ଗନେତାମାନେ ଯିଏ ଯେଉଁଠିଥିଲେ ଗିରଫ ହେଲେ । ଏହି ଆନ୍ଦୋଳନ ସମ୍ପର୍କରେ ନାନା ସମ୍ବାଦ ଖବର କାଗଜ ଗୁଡ଼ିକରେ ପ୍ରକାଶ ପାଉଥିଲା ।

ୱାର୍ଦ୍ଧା ଆଶ୍ରମରୁ ପ୍ରକାଶ ପାଉଥିବା 'ହରିଜନ' ପତ୍ରିକାରେ ଗାନ୍ଧିଜୀ ଆଗରୁ ଯେଉଁ ଆହ୍ୱାନ ଦେଇଥିଲେ ତାର ମର୍ମ ଥିଲା; ''ଦେଶର ଶେଷ ସଂଗ୍ରାମରେ କର ବା ମର । ପରାମର୍ଶ ବା ଉପଦେଶ ଦେବାକୁ ବାହାରେ କୌଣସି ନେତା ନଥିବେ । ନିଜର ବିବେକକୁ ନେତା କରି ସଂଗ୍ରାମରେ ଝାସ ଦେବା ଦେଶବାସୀଙ୍କ କର୍ତ୍ତବ୍ୟ ।'' ବାପାଙ୍କଠାରୁ ଘରେ ଆସି ଚିଠି ପହଞ୍ଚିଲା; 'ଏଥର ଆନ୍ଦୋଳନରେ ସରକାରଙ୍କ ପକ୍ଷରୁ ଅତ୍ୟାଚାର ହେବ । ତେଣୁ ଗୋଦାବରୀ ଯେମିତି ଘର ଛାଡ଼ି ନଯାଏ ଦୃଷ୍ଟି ରଖିବ ।' କିନ୍ତୁ ଗାନ୍ଧୀଙ୍କ ଆହ୍ୱାନରେ ପ୍ରଭାବିତ ଗୋଦାବରୀଙ୍କୁ ବାପାଙ୍କ ଆଜଟ ବନ୍ଦ କରି ରଖି ପାରିଲାନି । ସାନଭାଇ ମଧୁକୁ ସାଙ୍ଗରେ ଧରି ସେ ବାହାରିଲେ ବରୀ ଆଶ୍ରମକୁ । ଅଗଷ୍ଟମାସରେ ନଈ, ପାଟସବୁ ପାଣିରେ ଭରପୂର । ଗୋଟିଏ ଡ଼ୁଲି ଡଙ୍ଗା ଭଡ଼ା କରି ଭାଇ ଭଉଣୀ ଦୁହେଁ ଯାଇ ବରୀ ଆଶ୍ରମ ପାଖରେ ପହଞ୍ଚିଲେ । ସେଠାକାର ଆଶ୍ରମର ନାଁ ଥିଲା 'ସେବାଘର' । 'ସେବାଘର'ରେ ଗୁଣନିଧି ମହାନ୍ତି ଏବଂ ମଙ୍ଗଳାସେନଗୁପ୍ତ ଥିବାବେଳେ ଦୁହେଁ ପୋଲିସ୍‌ଦ୍ୱାରା ଗିରଫ ହୋଇ ଯାଇଥିଲେ । 'ସେବାଘର'କୁ ଜବତ୍ କରାଯାଇ ସେଠାରେ ଚୌକିଦାରକୁ ଜଗୁଆଳୀ ରୂପେ ମୁତୟନ କରାଯାଇଥିଲା । ଏହି ଘଟଣା ଯୋଗୁଁ ବରୀର କଂଗ୍ରେସ କର୍ମୀମାନେ କିଂକର୍ତ୍ତବ୍ୟବିମୂଢ଼ ହୋଇ ଯାଇଥିଲେ । ଗୋପବନ୍ଧୁ ଚୌଧୁରୀ ଓ ରମାଦେବୀଙ୍କ ଗିରଫ କଥା ଶୁଣି ଅନ୍ନପୂର୍ଣ୍ଣା ଦେବୀ ଓ ଶରତ ଚନ୍ଦ୍ର ମହାରଣା ଦୁହେଁ କଟକ ଯାଇଥିଲେ ସେ ଦୁହିଁଙ୍କୁ

ଦେଖା କରିବାକୁ । ଦେଶର ଖବର, କଂଗ୍ରେସ ପ୍ରେମୀ ତଥା ସ୍ୱାଧୀନତାକାଂକ୍ଷୀ ଗ୍ରାମବାସୀଙ୍କ ପାଖରେ ପହଞ୍ଚାଇବା ଲକ୍ଷ୍ୟରେ ଗୋଦାବରୀ ଦେବୀ ଲୋକମାନଙ୍କ ନିକଟକୁ ଗଲେ । ସେମାନଙ୍କ ମୁହଁରେ ଦେଖିବାକୁ ମିଳିଲା ଭୟ ଓ ଆତଙ୍କର ଚିହ୍ନ । ଗଲେ ପୂର୍ବ କର୍ମ କ୍ଷେତ୍ର ରତ୍ନଗିରିକୁ । ସେଠାରେ ଲୋକମାନେ ମଧ୍ୟ ସେହିପରି ଭୟଭୀତ ଥିଲେ । ପୋଲିସ୍ ଭୟରେ କେହି ନିଜ ଘରେ ତାଙ୍କୁ ରହିବାକୁ ଦେଲେ ନାହିଁ । ଶେଷରେ ସେ ନିଷ୍ପତ୍ତି କଲେ ଯେ, 'ନିଜର ତ କେଉଁଠି ଘର କି ଆଶ୍ରୟନାହିଁ, ତେଣୁ ପୋଲିସ୍ ଜବତରେ ଥିବା 'ସେବାଘର' ହିଁ ଏକମାତ୍ର ଆଶ୍ରୟ ସ୍ଥଳ ।'

ବରୀ ଅଞ୍ଚଳର ବିଶିଷ୍ଟ କଂଗ୍ରେସ କର୍ମୀ ଭଗୀରଥ ଦାସ, ତାଙ୍କ ସ୍ତ୍ରୀ ପ୍ରିୟମ୍ବଦା ଦେବୀ ଏବଂ ଗୋବର୍ଦ୍ଧନ ପ୍ରଧାନଙ୍କ ପାଖକୁ ଗୋଦାବରୀ ଯାଇ କହିଲେ ଯେ, ' ସେ ଆଇନ ଅମାନ୍ୟ କରି 'ସେବାଘର'ଠାରେ ରହିବାକୁ ଯାଉଛନ୍ତି, ତେଣୁ ଚାରିଆଡ଼କୁ ଖବର ଦେଇ ପାଟ ଓ ଘାଟରେ ଡଙ୍ଗା ମାଲିକମାନଙ୍କୁ ପୋଲିସ୍‌ବାଲାଙ୍କୁ ପାରିନକରିବା ପାଇଁ ଅନୁରୋଧ କରାଯାଉ । ସେମାନେ ଡଙ୍ଗାଗୁଡ଼ିକୁ ପାଟ ମଝିକୁ ନେଇଗଲେ ପୋଲିସ୍ ବାଲାଏ ଆଉ କଟାକ୍ଷ କରିପାରିବେନି । ଏକଥା କହି ସେ ବାହାରିଲେ 'ସେବାଘର' କୁ । ହରପ୍ରିୟାଦେବୀ, ହାରାମଣି ଦେବୀ ଓ ଛାୟାଦେବୀ ଆସି ଯୋଗଦେଲେ ତାଙ୍କ ସାଙ୍ଗରେ । ସେମାନେ ସମସ୍ତେ ମିଶି ଆଇନ ଅମାନ୍ୟ କରିବାରୁ ପୋଲିସ୍‌ଦ୍ୱାରା ବନ୍ଦୀ ହୋଇ ଜେଲ ଗଲେ । ଦୀର୍ଘ ଦେଢ଼ବର୍ଷ କାଳ ଜେଲରେ କଟାଇ ୧୯୪୩ରେ ଖଲାସ ହେଲେ । ସ୍ୱଗ୍ରାମ, କଲ୍ୟାଣପୁରରେ 'ଖଦିକୁଟୀର' ସ୍ଥାପନ କରି ଖଦିର ପ୍ରଚାର ଓ ପ୍ରସାର କାର୍ଯ୍ୟରେ ନିୟୋଜିତ କଲେ ନିଜକୁ ।

୧୯୪୬ରୁ ନାରୀମଙ୍ଗଳ, ସର୍ବୋଦୟ କାର୍ଯ୍ୟକ୍ରମ ଇତ୍ୟାଦି ସମାଜମଙ୍ଗଳ କାମର ନେତୃତ୍ୱ ନେଲେ ଗୋଦାବରୀ । ଶ୍ୱଶୁରାଳୟ, ବାଲେଶ୍ୱର କର୍ମକ୍ଷେତ୍ର ହେଲା । ୧୯୪୬ରେ ବାଲେଶ୍ୱର ଜିଲ୍ଲାର ମହିଳା ସମିତି ଗଠନ ପାଇଁ ଆଶା ବିଶ୍ୱାସ, ବିଭା ସରକାରଙ୍କ ସହାୟତାରେ ସେ ଉଦ୍ୟମ କରିଥିଲେ । ସେହିବର୍ଷ ପଞ୍ଜାବରେ ଅନୁଷ୍ଠିତ ଅଧିବେଶନରେ ଓଡ଼ିଶାରୁ ଯୋଗ ଦେଇଥିବା ଦୁଇଜଣ ସ୍ୱେଚ୍ଛାସେବିକାଙ୍କ ମଧ୍ୟରେ ସେ ଅନ୍ୟତମ । ଲୋକଙ୍କ ସେବାଥିଲା ତାଙ୍କର ବ୍ରତ । ୧୯୬୭ ମସିହାରେ ବାତ୍ୟାବିଧ୍ୱସ୍ତ ବାଲେଶ୍ୱର ଜିଲ୍ଲାର ବିଭିନ୍ନ ଅଞ୍ଚଳରେ 'ଅକ୍ସଫାମ' ସହାୟତାରେ ଏବଂ ଅନ୍ୟମାନଙ୍କ ସହଯୋଗରେ ସେ ଦୁର୍ଗତ ମାନଙ୍କର ଯେଉଁଭଳି ସେବା କରିଥିଲେ ତାହା ସ୍ମରଣଯୋଗ୍ୟ । ୧୯୭୧-୭୨ ମସିହାରେ କେତେଜଣ ଡାକ୍ତରଙ୍କ ସହାୟତାରେ ବାଲେଶ୍ୱର ଜିଲ୍ଲାର ଗ୍ରାମାଞ୍ଚଳସ୍ଥ ଲୋକମାନଙ୍କର ସ୍ୱାସ୍ଥ୍ୟାବସ୍ଥାର ଯତ୍ନ ନେବା ନିମିତ୍ତ ସେ କାର୍ଯ୍ୟ କରିଥିଲେ । 'ରାଜ୍ୟ ସମାଜ ମଙ୍ଗଳ ବୋର୍ଡ଼'ର ସଦସ୍ୟା ଭାବରେ ମଧ୍ୟ ସେ ବହୁ ଜନହିତକର କାର୍ଯ୍ୟ କରିଯାଇଛନ୍ତି ।

ସ୍ୱାଧୀନତା ଆନ୍ଦୋଳନରେ ତାଙ୍କ ଯୋଗଦାନର ଅନୁଭୂତିକୁ ଆଧାରକରି ସେ ଲେଖିଲେ 'ପ୍ରଜାତନ୍ତ୍ର'ର ସାପ୍ତାହିକ 'ଗାନ୍ଧି ବିଚାର' ପୃଷ୍ଠାରେ ଧାରାବାହିକ ଲେଖା; 'ପୁଣ୍ୟ ସ୍ମୃତିରୁଖିଏ'। ତାହା ୧୯୬୮ ରୁ ୧୯୬୯ ଯାଏ ପ୍ରକାଶିତ ହୋଇ ସାଧାରଣ ପାଠକ ଏବଂ ବୁଦ୍ଧିଜୀବୀମାନଙ୍କୁ ଆଲୋଡ଼ିତ କରିଥିଲା । ସ୍ୱୀକୃତି ସ୍ୱରୂପ ତାଙ୍କୁ ମିଳିଥିଲା 'ଓଡ଼ିଶା ସାହିତ୍ୟ ଏକାଡ଼େମୀ'ର ସମ୍ମାନ । ଅନୁରୂପ ପାଠକୀୟ ସ୍ୱୀକୃତି ମିଳିଥିଲା 'ପ୍ରଜାତନ୍ତ୍ର'ର ନାରୀଜଗତ ପୃଷ୍ଠାରେ ସ୍ଥାନିତ ଧାରାବାହିକ ଆଲୋଚନା 'ପ୍ରାକ୍‌ସ୍ୱାଧୀନତା ଯୁଗରେ ଭାରତୀୟ ନାରୀ'କୁ । ପୁଣି ଆକାଶବାଣୀ ଦ୍ୱାରା ପ୍ରସାରିତ, 'ଗାନ୍ଧିଜୀଙ୍କ ପରିକଳ୍ପିତ ନାରୀ ସ୍ୱାବଲମ୍ବନଶୀଳତା,' 'ଆମପାଇଁ ପଚିଶବର୍ଷର ସ୍ୱାଧୀନତା' ଆଦି ବିଷୟକ ଆଲୋଚନାଗୁଡ଼ିକ ତାଙ୍କ ମୁହଁରୁ ଶୁଣି ଶ୍ରୋତୃବର୍ଗ ପାଇଥିଲେ ତାଙ୍କ ଗଭୀର ମନନଶୀଳତା ଓ ଚିନ୍ତାଶକ୍ତିର ପରିଚୟ । ଗାନ୍ଧିବିଚାର ଧାରାର ଯୁଗୋପଯୋଗୀ ତର୍ଜମା ଏହିସବୁ ଆଲୋଚନାର ବିଷୟବସ୍ତୁ ଥିଲା ।

୧୯୪୫ ମସିହା, ଡିସେମ୍ବର ୧୩ ତାରିଖ ଦିନ ଗୋଦାବରୀ ଦେବୀ ବିବାହ ବନ୍ଧନରେ ଆବଦ୍ଧ ହୋଇଥିଲେ । ତାଙ୍କର ପାଣିଗ୍ରହଣ କରିଥିଲେ, ସମଧର୍ମା ଅନ୍ୟତମ ଦେଶପ୍ରେମୀ, ସ୍ୱାଧୀନତାସଂଗ୍ରାମୀ, ସମାଜ ସଂସ୍କାରକ, ରବୀନ୍ଦ୍ର ମୋହନ ଦାସ । ଦୁଇଟି କନ୍ୟା ସନ୍ତାନର ଜନନୀ ହୋଇଥିଲେ ସେ । ଝିଅ, ନାତି, ନାତୁଣୀଙ୍କର ପରିପୂର୍ଣ୍ଣ ସଂସାରଥିଲା ତାଙ୍କର । ସ୍ୱାମୀ ସମାଜସେବୀ ରବୀନ୍ଦ୍ରମୋହନ ଦାସଙ୍କ ପାଖକୁ ବିଭିନ୍ନ କାର୍ଯ୍ୟୋପଲକ୍ଷେ ଆସୁଥିବା ସବୁ ଶ୍ରେଣୀର ଲୋକମାନେ ତାଙ୍କ ସ୍ନେହ ଓ ମମତାର ସ୍ପର୍ଶ ପାଇଥାନ୍ତି । ଜୀବନର ଶେଷ କାଳକୁ ସେ ରୋଗାକ୍ରାନ୍ତା ହେଲେ । ପରେ ରୋଗମୁକ୍ତା ହୋଇଥିଲେ ମଧ ଶଯ୍ୟାଶାୟୀ ହୋଇ ପଡ଼ି ରହିବାକୁ ହେଲା ତାଙ୍କୁ । ଶାରୀରିକ ଦୁଃଖକୁ ବଳିଗଲା ସାନଝିଅ, କୀର୍ତ୍ତିଧାରାର ଆକସ୍ମିକ ମୃତ୍ୟୁ ।

ପରିଶେଷରେ କର୍ମମୟ ଜୀବନର ଅବସାନ ୧୯୯୩ ମସିହା ଜୁନ୍ ୩୦ ତାରିଖ ଦିନ ଘଟିଲା । ଦୁଃଖରେ ଆରମ୍ଭ ହୋଇଥିବା, ଗଢ଼ା ହୋଇଥିବା ଜୀବନ ତାଙ୍କର ଦୁଃଖରେ ହିଁ ଶେଷ ହେଲା । କିନ୍ତୁ ଦୁଃଖ ନିକଟରେ ସେ ହାର ମାନି ନାହାନ୍ତି । ଦୁଃଖ ରୂପକ ଅନଳ ବାରମ୍ବାର ତାଙ୍କୁ ଗ୍ରାସ କରିଛି ମାତ୍ର ସେ ନିଜର କର୍ତ୍ତବ୍ୟନିଷ୍ଠା ବଳରେ, ଦୃଢ଼ ମନୋବଳ ଯୋଗୁଁ ତାଭିତରୁ ବାହାରି ଆସିଛନ୍ତି, ବିଶୁଦ୍ଧ କାଞ୍ଚନର ପରିଚୟ ବହନ କରି । କୈଶୋରରୁ ସେ ନିଜର ମହିମାମୟ କର୍ତ୍ତବ୍ୟନିଷ୍ଠା ତଥା ସଂଗ୍ରାମୀ ଜୀବନର ସ୍ୱାତନ୍ତ୍ର୍ୟ ପ୍ରତିଷ୍ଠା କରି ପାରିଥିଲେ । ଅହିଂସାକୁ ପାଥେୟ କରି ସଂଗ୍ରାମଶୀଳ ହେବାର ଯେଉଁ ପନ୍ଥା ସେ ଅବଲମ୍ବନ କରି ଯାଇଛନ୍ତି, ଦେଶ ପ୍ରେମରେ ଉଦ୍‌ବୁଦ୍ଧ ହୋଇ ଆତ୍ମୋତ୍ସର୍ଗ କରିବାର ଯେଉଁ ପରାକାଷ୍ଠା ସେ ପ୍ରଦର୍ଶନ କରିଛନ୍ତି ତା' ଆଗରେ ସ୍ୱତଃ ମୁଣ୍ଡ ନଇଁଯାଏ । ପ୍ରିୟ ନାଲାଦା', ରଘୁନାଥ

ସାଥୀନ୍ତ, ଓଡ଼ିଶାବାସୀଙ୍କର ଚିରପୂଜ୍ୟ ଗୋପବନ୍ଧୁ ଚୌଧୁରୀ ଏବଂ ପରମପୂଜ୍ୟା ରମାଦେବୀ (ଯାହାଙ୍କୁ ସେ ବାପା, ବୋଉଙ୍କର ସମ୍ମାନ ଦେଉଥିଲେ ଏବଂ ସେ ଦୁହିଁଙ୍କରଠାରୁ ମଧ୍ୟ ଅନୁରୂପ ସ୍ନେହ ଲାଭ କରିଥିଲେ) ସର୍ବୋପରି ମହାତ୍ମାଗାନ୍ଧୀଙ୍କ ଚିନ୍ତାଧାରା ତଥା ସାହଚର୍ଯ୍ୟ ତାଙ୍କ ଜୀବନଧାରାକୁ ଗଭୀର ଭାବରେ ପ୍ରଭାବିତ କରିଥିଲା । ପୁଣି ସଂଗ୍ରାମୀ, ସମାଜ ସେବୀ ରବୀନ୍ଦ୍ର ମୋହନ ଦାସଙ୍କୁ ବିବାହ କରିବାପରେ ତାଙ୍କ ଜୀବନର ଏବଂ ସ୍ୱଚିନ୍ତାଧାରାର ଲକ୍ଷ୍ୟ ହାସଲ ପାଇଁ ସୁଯୋଗ ବହୁଗୁଣିତ ହେବା ସଙ୍ଗେ ସଙ୍ଗେ ସିଦ୍ଧି ବିମଣ୍ଡିତ ହେଲା । ଯେହେତୁ 'ସେବାଧର୍ମ' ଏବଂ 'ଦେଶପ୍ରେମ' ଦ୍ୱାରା ଉଭୟ ହୋଇଥିଲେ ଅନୁପ୍ରାଣିତ, ତେଣୁ ଦୁହେଁ ଦୁହିଁଙ୍କର ପରିପୂରକ ହୋଇଗଲେ । ଯଥାର୍ଥରେ 'ମଣି', 'କାଞ୍ଚନ'ର ସଂଯୋଗ ସଂଘଟିତ ହୋଇଥିଲା ।

ସେ କେବଳ ପାପନାଶିନୀ ପୁଣ୍ୟତୋୟା ଗୋଦାବରୀ ନଦୀର ନାମ ଧାରଣ କରି ନଥିଲେ, ଜନକ କୁଳର ରାଜାଗଣ ଗୋଦାବରୀ ନଦୀର କୃପା ଫଳରେ ମୋକ୍ଷ ଲାଭ କରିଥିଲା ଭଳି ତଥା ବୃହସ୍ପତି ଗ୍ରହରେ ସିଂହ ରାଶି ପ୍ରବେଶ କରିବା ସମୟରେ ସ୍ୱର୍ଗ, ମର୍ତ୍ତ୍ୟ ଏବଂ ପାତାଳବାସୀ ଗଣ ଏହାର ପୁଣ୍ୟଜଳରେ ସ୍ନାନ କରି ନିଜର ପାପ ପ୍ରକ୍ଷାଳନ ପୂର୍ବକ ତର୍ପଣ ମାଧ୍ୟମରେ ପିତୃଲୋକଙ୍କ ମୁକ୍ତିର କାରଣ ସାଜିଥିବା ଭଳି, ମାତୃଭୂମି ଭାରତକୁ ପରାଧୀନତାର କବଳରୁ ମୁକ୍ତ କରିବା ନିମିତ୍ତ ସଂଘଟିତ ସ୍ୱାଧୀନତା ଆନ୍ଦୋଳନ କ୍ଷେତ୍ରରେ ଯୋଗଦାନ କରି ସେ ତାଙ୍କ ନାମର ସାର୍ଥକତା ମଧ୍ୟ ପ୍ରତିପାଦନ କରିଥିଲେ । ତାଙ୍କର ପାର୍ଥିବ ଶରୀର ସିନା ପଞ୍ଚଭୂତରେ ମିଶିଯାଇଛି କିନ୍ତୁ ତାଙ୍କର ଦୃଢ଼ ମନୋବଳ, ଗାନ୍ଧି ବିଚାର ପ୍ରତି ଅନୁରକ୍ତି ଓ ଶ୍ରଦ୍ଧା, ଦେଶ ମାତୃକା ତଥା ଜନ ସାଧାରଣଙ୍କ ସେବା ପାଇଁ ତ୍ୟାଗ ଓ ଆତ୍ମୋତ୍ସର୍ଗ ଚିର ଭାସ୍ୱର ହୋଇ ରହିବ ।



# (୧)

''କ୍ଷଣମପି ସଜ୍ଜନ ସଙ୍ଗତି ରେକା
ଭବତି ଭବାର୍ଣ୍ଣବ ତରଣେ ନୌକା ।''

ପିଲାଦିନେ ଗାଁ ସ୍କୁଲର ନିମ୍ନପ୍ରାଇମେରୀ ଶ୍ରେଣୀରେ ପଢୁଥିବାବେଳେ ସ୍କୁଲକୁ କେଇଖଣ୍ଡ ଖବର କାଗଜ ଆସୁଥିଲା । 'ସମାଜ', 'ପ୍ରଜାତନ୍ତ୍ର' ଓ 'ଉତ୍କଳ ଦୀପିକା' ସେତେବେଳର ଉଲ୍ଲେଖଯୋଗ୍ୟ ସମ୍ବାଦପତ୍ର । ଆମ ସ୍କୁଲର ଶିକ୍ଷକମାନଙ୍କ ଭିତରୁ ଜଣେ ଦୁଇଜଣ ଓ ଗାଁର ବିଶିଷ୍ଟ ଲୋକମାନେ ଏହାକୁ ପଢୁଥିବାର ଦେଖୁଁ । ସେତେବେଳକୁ ମୁଁ ତୃତୀୟ ଶ୍ରେଣୀର ଛାତ୍ରୀ । ବଡ଼ ବଡ଼ ମୋଟା ଅକ୍ଷରରେ ଉପରେ ଯେଉଁ ସବୁ ପ୍ରଧାନ ପ୍ରଧାନ ସମ୍ବାଦ ଲେଖା ହୋଇଥାଏ ଆମେ ସବୁ ସେମାନେ ପଢୁଥିବାବେଳେ ଦେଖି ନେଉ । ସେତେବେଳେ ଆଠ କି ନ' ବର୍ଷର ପିଲା ଆମେ । ବୟସ ଦଶ ହେବା ପୂର୍ବରୁ ସ୍କୁଲ ଯିବା ବନ୍ଦ । ଗାଁର ଅଭିଜାତ କରଣ ଘରର ଝିଅମାନେ ଏଗାର କି ବା'ର ବର୍ଷରହେବା ପରେ ଦାଣ୍ଡ ଦୁଆରରେ ବାପ ଦାଦିଙ୍କ ସାମ୍ନାରେ ସିଧା ବେକଟେକି ଚାଲିଯିବା ତ ଗୋଟାଏ ବଡ଼ ଅପରାଧର କଥା ! ଅନ୍ୟ ଲୋକ ଥିଲେ ଦାଣ୍ଡ ଦୁଆରକୁ ବାହାରିବା ନିଷେଧ ।

୧୯୨୭ କି ୨୮ ସାଲ ହେବ ପରା, ଲାହୋର କଂଗ୍ରେସରେ ପଣ୍ଡିତ ଜବାହାରଲାଲ ସଭାପତି । ସତେଇଶଟା ଘୋଡ଼ା ଯୋଚା ହୋଇଥିବା ଗାଡ଼ିରେ ସଭାପତିଙ୍କୁ ବସାଇ ପଟୁଆର ଚାଲିଛି । ଶାନ୍ତିପୂର୍ଣ୍ଣ ଉପାୟରେ ଓ ଅହିଂସା ପନ୍ଥାରେ ପୂର୍ଣ୍ଣ ସ୍ୱରାଜ ଲାଭ ସେ ଅଧିବେଶନର ଘୋଷଣା । ଏହିସବୁ ସମ୍ବାଦ ମୁରବିମାନେ ପଢୁଥିବାବେଳେ ଚୋରାଇ ଚୋରାଇ ଆମେ ଦେଖି ନେଉ । ସେମାନଙ୍କ ଆଲୋଚନା ଶୁଣି ବୁଝିଲୁ 'ଦେଶ କ'ଣ ?' 'ସରକାର କ'ଣ ?' ଓ 'ସ୍ୱାଧୀନତା ଏବଂ ପରାଧୀନତା କ'ଣ ?' ବୋଲି । ସେତେବେଳେ ଗାନ୍ଧିଜୀ, ଜବହାରଲାଲ, ଲାଲାଲଜପତରାୟ ପ୍ରଭୃତି ବଡ଼ ବଡ଼ ନେତାଙ୍କ ନାମ ଖବର କାଗଜରେ ଲେଖା ହେଇଥାଏ । ତା' ପୂର୍ବରୁ ମୋତେ ପ୍ରାୟ ପାଞ୍ଚବର୍ଷ ହୋଇଥିବାବେଳେ ଆମ ଗାଁରେ ସୂତାକଟା 'ଅରଟ ମେଳଣ' ସଭା ହୋଇଥିଲା । ସେତେବେଳେ କୀର୍ତ୍ତନ 'ମନ୍ଦେ ମନ୍ଦେ ନବ ଆନନ୍ଦେ ଗାଅରେ ଭାରତ ସ୍ୱାଧୀନ' ଗୀତ ଗାଇ ଗାଁ'ର ଶିକ୍ଷିତ ବଡ଼ ବଡ଼ ପୁଅମାନେ ବୁଲୁଥିଲେ । ମୋର ଜଣେ ଭାଇ କଲିକତାରୁ ଏମ୍.ଏ. ପଢ଼ା ଛାଡ଼ିଦେଇ ଆସି ଗାଁରେ ଏହିପରି ସ୍ୱଦେଶୀ ଭାବର ପ୍ରଚାର କରୁଥାନ୍ତି । ତାଙ୍କ ନାଁ ଅଦ୍ୱୈତ ଚରଣ ଦାସ । ତାଙ୍କ ସାଙ୍ଗକୁ ରଘୁନାଥ ଦାସ, ପ୍ରାଣ କୃଷ୍ଣ ପଟ୍ଟନାୟକ ପ୍ରଭୃତି ଗାଁ'ରେ ସୂତା କଟାଇବା, ଲୁଗାବୁଣାଇବା,

ସ୍କୁଲ ବସାଇବା ଓ ଝିଅମାନଙ୍କୁ ପାଠ ପଢ଼ିବା ପାଇଁ ପ୍ରବର୍ତ୍ତାଇବା ପ୍ରଭୃତି ସଙ୍ଗଠନ କାମରେ ଲାଗିଥାନ୍ତି । ଆମ ଗାଁ'ର ବୁଢ଼ା ବୁଢ଼ୀ, ମୁରବି ଓ ସ୍ତ୍ରୀ ଲୋକମାନେ ପକ୍ଷୀ ଚକ୍ର ଲଗା ବଡ଼ବଡ଼ କାଠ ଥରଟରେ ମୋଟା ମୋଟା ତାକୁଡ଼ି ଲଗାଇ ସୂତାକଟା ଆରମ୍ଭ କରି ଦେଇଥାନ୍ତି । ମୋଟାମୋଟି ଗାଁରେ କଂଗ୍ରେସ କାମ ଚାଲିଥାଏ । ଦେଶ ସ୍ୱାଧୀନ ହେବ, ଇଂରେଜ ଶାସନ ଯିବ, ଏଥିପାଇଁ ଉଦ୍ୟମ ଆରମ୍ଭ ହୋଇ ଯାଇଥାଏ ଜୋର୍‌ସୋର୍‌ରେ । 'କୁଟି ଖାଇ କାଟି ପିନ୍ଧ' କଥାକୁ 'ଏବେ/ଘରେ ଘରେ ଦେଶବାସୀ ପାଳ ସରବେ'- ପଦ ଥିଲା ସମସ୍ତଙ୍କ ମୁହଁରେ ।

ଉତ୍କଳମଣି ପଣ୍ଡିତ ଗୋପବନ୍ଧୁ ଦାସ ଆସି ସଭା କରାଇଥିଲେ । ୧୯୨୭ରେ ଅକାଳ ବନ୍ୟା ଆସିଲା । ଖରସୁଆଁ, ବ୍ରାହ୍ମଣୀ ଓ ବୈତରଣୀର ଭୈରବୀବନ୍ୟା । ଯାଜପୁର, ଆଳି, କନିକାର ଲୋକଙ୍କୁ ବାସ ଗ୍ରାସ ହୀନ କରାଇ ଅସୀମ ଯାତନା ଦେଲା । ପଣ୍ଡିତ ଗୋପବନ୍ଧୁ ଚୁଡ଼ା, ଚାଉଳ ଧରି, ରାତି ଦିନ ପାଣି କାଦୁଅରେ ଘାଣ୍ଟି ହୋଇ ଦଳେ ସହକର୍ମୀଙ୍କ ସହ ଦୁର୍ଗତ ଅଞ୍ଚଳର ଲୋକମାନଙ୍କର ସେବା ଶୁଶ୍ରୁଷା କରୁଥିଲେ । ସେତେବେଳେ ଛତର ନବାକୁ କେହି ରାଜି ହେଉନଥିଲେ । ଅମୃତ ଲାଲ ଠକ୍‌କର ବାପା ବି ବଡ଼ ଡଙ୍ଗାରେ ଚୁଡ଼ା, ଚାଉଳ ଧରି ଆସି ପହଞ୍ଚୁଥିଲେ । ସେ ସେତେବେଳେ ଅସ୍ପୃଶ୍ୟତା ନିବାରଣ କଥା କହୁଥିଲେ ବୋଲି ଲୋକମାନେ କୁହାକୁହି ହୁଅନ୍ତି । ଜମିବାଡ଼ି ଧୋଇ ଯାଇଥିବାରୁ ଗାଁ'ର ଅନ୍ଧ ପାଠୁଆ ଯୁବକମାନେ ମଧ ବେକାର ଅବସ୍ଥାରେ ନାନା ଦୁଃଖରେ ଥା'ନ୍ତି । ଠକ୍‌କର ବାପା କେତେଜଣଙ୍କୁ ନେଇ ଟାଟାରେ ଚାକିରି କରାଇ ଦେଇଥିଲେ ।

୧୯୨୮-୨୯ ମସିହା ବେଳକୁ ସ୍କୁଲରେ ପିଲାମାନେ ସୂତାକାଟିବା ଆରମ୍ଭ କଲେ । ଜଣେ ସୂତାକଟା ଶିକ୍ଷକ ଆସି ଏସବୁ ଶିଖାଇଲେ । ଗାଁର ଦୁଇଜଣ ପିଲା ମାଇନର ପାଶ୍ କରି ସତ୍ୟବାଦୀ ଜାତୀୟ ସ୍କୁଲରେ ପାଠ ପଢ଼ିବାକୁ ଗଲେ । ଜଣେ ଅବସରପ୍ରାପ୍ତ ଅଣ୍ଡରସେକ୍ରେଟାରୀ ଶ୍ରୀମନ୍ତ ବାରିକ ଓ ଅନ୍ୟ ଜଣକ ସ୍ୱର୍ଗୀୟ କୈଳାସ ଚନ୍ଦ୍ର ଦାସ । ଶୁଣିଲୁ ପୂଜ୍ୟ ଗୋପବନ୍ଧୁ ଚୌଧୁରୀ ହାକିମ ଚାକିରି ଛାଡ଼ିଦେଲେ । ବନ୍ୟା ପରିସ୍ଥିତିରେ ବରୀ ଅଞ୍ଚଳର ତାଙ୍କ ପ୍ରଦତ୍ତ ରିପୋର୍ଟ ସରକାର ଅଗ୍ରାହ୍ୟ କରି ଦେବାରୁ ସେ ଏପରି କରିଥିଲେ ବୋଲି ମଧ ଶୁଣିଥିଲୁ । ସେ ମଧ ଅସହଯୋଗ ଆନ୍ଦୋଳନକାରୀଙ୍କ ସହିତ ମିଶିଲେ । ପୁଣି ଜିଲ୍ଲାବୋର୍ଡ଼ ଚେୟାରମ୍ୟାନ୍ ହୋଇ ସ୍କୁଲମାନଙ୍କରେ ପିଲାମାନଙ୍କୁ ସୂତାକଟା ଶିକ୍ଷା ଦେବାକୁ ହୁକୁମଦେଲେ ।

ସବୁ ସ୍କୁଲରେ ସୂତାକଟା ହେଲା । ଆମ ସ୍କୁଲରେ ବି ହେଲା । ଅବଶ୍ୟ ତୃତୀୟ ଶ୍ରେଣୀରେ ଆମେ ଯେଉଁମାନେ ପଢୁଥିଲୁ କେବଳ ସେଇମାନେ ସୂତାକାଟିଲୁ । ଆମ ସ୍କୁଲର

ପୁରସ୍କାର ବିତରଣୀ ସଭାକୁ ଗୋପବନ୍ଧୁ ଚୌଧୁରୀ ସଭାପତି ହୋଇ ଆସିବାର କଥା ହୋଇଥିଲା । ସମସ୍ତଙ୍କ ଭିତରେ ଭାରି ଉତ୍ସାହ ଖେଳି ଯାଇଥିଲା । ଆମେସବୁ ଗୀତ ଓ ଅଭିନୟ ଶିଖିଥିଲୁ । କିନ୍ତୁ ସେ ଆସିଲେ ନାହିଁ । ମନବଡ଼ ଖରାପ ହେଲା । କେଇମାସପରେ ଯାଜପୁରରେ ସବୁ ସ୍କୁଲର ପିଲାମାନେ ସୂତାକଟା ପ୍ରତିଯୋଗିତାରେ ଯୋଗଦେବା ପାଇଁ ହୁକୁମ ଆସିଲା । ଆମ ସ୍କୁଲରୁ ମୋ ସମେତ ଦୁଇ ତିନିଜଣ ଝିଅ ଓ ଜଣେ ପୁଅ ଗଲୁ । ସେତେବେଳେ ଆମ ଗାଁର ରଘୁନାଥ ଦାସ, ଯିଏକି ଗାଁ'ରେ ସ୍ୱଦେଶୀଆନ୍ଦୋଳନ ଓ ସଂଗଠନ କାର୍ଯ୍ୟରେ ବିଶେଷ ଭାଗ ନେଉଥିଲେ ସେ ବି ଯାଜପୁର ଲୋକାଲବୋର୍ଡ଼ରେ କିରାନୀ କାମ କରୁଥାନ୍ତି । ସୂତାକଟା ପ୍ରତିଯୋଗିତାରେ ମୁଁ ଭଲକଲି, ପ୍ରଥମହେଲି । ଆଣ୍ଠୁ ଉପରକୁ ଖଦଡ଼ ଧୋତି ପିନ୍ଧିଥିବା, ଶୁଭ୍ର ଖଦଡ଼ ଚାଦର ଘୋଡ଼ାଇ ହୋଇଥିବା ଜଣେ ଅତି ଶାନ୍ତ ସ୍ୱଭାବ ଓ ସୌମ୍ୟଦର୍ଶନ ଭଦ୍ରବ୍ୟକ୍ତି ଆସି ପରୀକ୍ଷା ଫଳ ଦେଖିଲେ । ରଘୁବାବୁ ତାଙ୍କ ସହ ମୋର ପରିଚୟ କରାଇଦେଲେ । ମୋତେ ସେ ବହୁତ ସ୍ନେହ ଆଦର କଲେ । ତାଙ୍କୁ ଦେଖି ଓ ତାଙ୍କର ସ୍ନେହ ପାଇ ମୋର ନଅ ବରଷର ମନ କିପରି ଏକ ପବିତ୍ର ପିତୃସ୍ନେହର ବନ୍ଧନରେ ଯେପରି ବାନ୍ଧି ହୋଇଗଲା । ସେ ଥିଲା ମୋ ଜୀବନର ପ୍ରଥମ ପୂର୍ଣ୍ଣିମା ଦର୍ଶନ । 'ଶଠ ସୁଧୁରଇ ସତ୍ସ ସଂଗତି ପାଇ / ପାରଶ ପରସିକୁ ଧାତୁ ସୁହଇ'- ତୁଳସୀ ଦାସଙ୍କର ଏ ଦୋହାଟି ବଡ଼ ହେବାପରେ ମୁଁ ଯେତେବେଳେ ପଢ଼ିଲି ତାହା ମୋ ନିଜ ଜୀବନରେ ଘଟିଛି ବୋଲି ମୁଁ ଭାବିଲି ।

ଏହା ପରେ ପରେ ବନ୍ୟାରେ ଆମ ସାହି ଓ ଆମ ପରିବାରରେ ବହୁ ଦୁର୍ଘଟଣା ଘଟିଲା । ମୋର ପୁଣ୍ୟମୟୀ ବୋଉ ଆମକୁ ଚିରଦିନ ପାଇଁ ଛାଡ଼ି ଚାଲିଗଲା । ମୋର ବଡ଼ ଭଉଣୀର ମାତ୍ର ବୟସ ବା'ର ଓ ମୋର ବୟସ ଦଶ । ଭାଇ ଦୁଇଟି ଆଠ ଓ ଚାରି ବର୍ଷର । ଗାଁ'ରେ ସେ ବର୍ଷ ନିମୁନିଆ ଓ ଟାଇଫଏଡ଼ ହୋଇ ବହୁଲୋକଙ୍କର ପ୍ରାଣହାନି ଘଟିଲା । ବନ୍ୟା ଦାଉରେ ଲୋକମାନେ ବସବାସ ହରାଇ ଥଣ୍ଡା କାକରରେ ପଡ଼ି ରହିବା ଯୋଗୁଁ ଏ ଅବସ୍ଥା ଘଟିଲା । ଗାଁ'ରେ ଡାକ୍ତର ବୋଲି ଜଣଙ୍କୁ କହୁଥାନ୍ତି । ସେ ପୁଣି ସ୍ଥାନୀୟ ବ୍ରାଞ୍ଚ ପୋଷ୍ଟ ଅଫିସ୍‌ରେ ପୋଷ୍ଟ ମାଷ୍ଟର । ତାଙ୍କ ଚିକିତ୍ସା ବି ମୋ ବୋଉ ପାଇଁ ହୋଇ ପାରିନଥିଲା । ୪/୬ ଦିନଜର ହେଲେ ତାହାକୁ କେହି ଗୁରୁତ୍ୱ ଦେଉନଥିଲେ । ସେଥିପାଇଁ ଔଷଧ ବ୍ୟବହାର କରିବାକୁ ପସନ୍ଦ କରୁନଥିଲେ । ଅବଶ୍ୟ ମୋର ଭାଇ, ଜେଜେମା ଓ ସାନ୍ତମା' ପ୍ରଭୃତିଙ୍କ ଚିକିତ୍ସାପାଇଁ ଆମର ପୁରୁଣା ଗୃହ ବୈଦ୍ୟ ବଂଶର ଜଣେ ବୈଦ୍ୟ ଆସି ଚିକିତ୍ସା କରିବା ଫଳରେ ସମସ୍ତେ ଭଲ ହେଲେ । କିନ୍ତୁ ବୋଉ ତାର ଆତ୍ମନିଷ୍ଠ ଭଙ୍ଗ ନକରି ଔଷଧ ପାନେ ନଖାଇ ଆମକୁ ଅଣବାଛିଆ କରି ଓ ଗାଁ'ର ଦୁଃଖୀ, ଗରିବଙ୍କୁ ନିରାଶ କରି ତାର ଅଭୀଷ୍ଟଧାମକୁ ଗଲା । ସେ ସ୍ୱର୍ଗକୁ ଗଲା ବୋଲି କହିବି କାହିଁକି ନା ଆଜି ସୁଦ୍ଧା ଗାଁ'ର ବଞ୍ଚିଥିବା

ବୁଢ଼ାବୁଢ଼ୀମାନେ କହନ୍ତି, 'ଟଙ୍କେଇ ପେଟକଥା ସେ ଜାଣୁଥିଲା । ସିଏ ସମସ୍ତଙ୍କର ନିଃଶ୍ୱାସ ମାରି ଦେଇ ଚାଲିଗଲା ।' ଗାଁ ଲୋକେ କୁହାକୁହି ହେଉଥିଲେ, 'ଆଉ କାହାଠୁ ଉପାସ ରହିଥିଲେ ଆହାର ମିଳିବ ?' ବାପା ବି ସେତେବେଳେ ଗୋଟିଏ କମ୍ପାନୀର ମେନେଜର ରୂପେ ମାଡ୍ରାସରେ ଥିବା ତାଙ୍କ ଡିପୋକୁ ଯାଇଥାନ୍ତି । ସେସବୁ କଥା ଲେଖିବସିଲେ ଏଡ଼େ ବିସ୍ତାରିତ ହୋଇଯିବ ଯେ ଶେଷ ହେବ ନାହିଁ ।

ଆମ ପରିବାରର ଦୁର୍ଦ୍ଦଶା ଆରମ୍ଭ ହେବା ସଙ୍ଗେ ସଙ୍ଗେ ମୋ ଅଳିଅଜଳମନର ସ୍ୱପ୍ନ ସବୁ ଦୁଃ ସ୍ୱପ୍ନରେ ପରିଣତ ହୋଇଗଲା । ଗୋଟିଏ କେମିତିକା ଭାବାନ୍ତରର ଆଘାତରେ ମନରେ ସବୁବେଳେ ବିଷମଦ୍ୱନ୍ଦ୍ୱର ଘାତ ପ୍ରତିଘାତ ମନକୁ ସ୍ଥାଣୁ କରିଦେଲା । ପାଠପଢ଼ାରେ ଡୋର ବନ୍ଧା ହେଲା ସିନା ମନର ପ୍ରବଳ ପ୍ରହାର ମୋତେ ଏ ସଂସାର ପ୍ରତି ବଡ଼ ଅନାସକ୍ତ କରିଦେଲା । ଏ ଶୋକ ଦୁଃଖରୁ ତ୍ରାହି ପାଇବାର ବାଟ କେଉଁଠି- ଏକଥା ସବୁବେଳେ ଚୁପ୍‌ଚାପ୍ ବସି ଭାବିବାକୁ ଲାଗିଲି । ଖାଇବା ଶୋଇବା ମୋ ପକ୍ଷରେ ବଡ଼ କଷ୍ଟଦାୟକ ବୋଧ ହେଲା । ସତ୍ୟ ଓ ଶାନ୍ତିର ଅନୁସନ୍ଧାନ ନିଜ ମନ ଭିତରେ ସବୁବେଳେ କରିବାକୁ ଲାଗିଲି । କ'ଣ କଲେ ଏପରି ଶୋକ ସନ୍ତପ୍ତ ଜୀବନରୁ ଉଦ୍ଧାର ପାଇ ହେବ ? ଏ ଚିନ୍ତା ମୋତେ ଅନବରତ ଘାରି ରହିଲା । ଭାଇ ଭଉଣୀ ସମସ୍ତଙ୍କ ପାଖରୁ ଦୂରରେ ରହି କେତେବେଳେ ନଈକୂଳରେ, କେତେବେଳେ ଘର କୋଣରେ, କେତେବେଳେ ପଡ଼ିଆରେ ବସି ଆକାଶକୁ ଚାହିଁ ଭାବିଭାବି ମନରେ ସ୍ଥିର କରିନେଲି ଭଗବାନଙ୍କୁ ପାଇଲେ ସବୁ ଅଶାନ୍ତି ଦୂର ହୋଇଯିବ । ମୋତେ 'ଭକ୍ତିଯୋଗ' ଓ ରାମକୃଷ୍ଣ ପରମହଂସଙ୍କ ଜୀବନୀ ବହି ଦୁଇଖଣ୍ଡ ରଘୁବାବୁ ଆଣି ପଢ଼ିବାକୁ ଦେଲେ । ଈଶ୍ୱରଭକ୍ତି ଓ ମଣିଷ ସତ୍‌ପଥକୁ ଯିବାର କେତେକ ଉପଦେଶ ସେ ସବୁଥିରୁ ପାଇ ସେହିପରି ସତ୍‌ଗ୍ରନ୍ଥ ଓ ସାଧୁବାଣୀ ପଢ଼ିବାକୁ ବେଶୀ ବେଶୀ ମନ ହେଲା । ସେତିକି ବେଳେଠୁଁ ଟିକିଏ ଟିକିଏ ଧ୍ୟାନ, ପ୍ରାର୍ଥନାଦି ଆରମ୍ଭ କଲି । ଚୁପ୍ ଚାପ୍ ବସି ମାଇକିନିଆ ଝିଅଟିର ଏପରି ଢଙ୍ଗ ଦେଖି ମୋ ଗୋସିମା', ବୁଢ଼ାବାପା ଓ ଗାଁ- ସାହିର ଅନ୍ୟମାନେ ଚିଡ଼ିଲେ । ଝିଅମାନେ ଠାକୁର କି ଗୁରୁଜନଙ୍କୁ ବି ମୁଣ୍ଡ ନୁଆଁଇ ଜୁହାର ହେବା ଆମ ଗୋଷ୍ଠୀରୀତିରେ ସେତେବେଳେ ନଥିଲା । କହନ୍ତି; ବର ପାଇବା ପାଇଁ ଦଣ୍ଡବତ ହେଉଛି । ମୁଁ ତ ଏକଥା ମାନେ ନାହିଁ ମୋ ମନରେ ମୁଁ ଚଳେ । ସନ୍ଧ୍ୟାହେଲେ ପ୍ରାର୍ଥନା ଓ ଧ୍ୟାନ କରେ । ସକାଳୁ ଚଉରାଳିପି ନଈକୂଳରେ ବସି ସୂର୍ଯ୍ୟଙ୍କ ଆଡ଼କୁ ଅନାଇ ରହେ । ଭଗବାନଙ୍କ ଦର୍ଶନ ପାଇଲେ ମୋ ବୋଉକୁ ଫେରାଇ ଆଣିବି ବୋଲି ପ୍ରାର୍ଥନା କରିବାକୁ ମନସ୍ଥ କରିଥାଏ । କିନ୍ତୁ ସେ କଥା ସବୁ ତ କାମରେ ହୋଇ ପାରୁନଥାଏ । ଗୋଟିଏ ଅଦ୍‌ଭୁତ ଜିଦ୍‌ଖୋର ଝିଅ ବୋଲି ବୁଢ଼ୀମା' ମୋତେ ବହୁତ ମାରେ । ମୁଁ ନିର୍ବିକାର ମନରେ ଅବାଧଥାଏ ।

୧୯୩୦ରେ ଅସହଯୋଗ ଆନ୍ଦୋଳନ, ପୁଣି ସୂତାକଟା, ବିଲାତି ଜିନିଷ ବର୍ଜନ ଆନ୍ଦୋଳନ ଆରମ୍ଭ ହେଲା । ସେ କଥା ସେତେବେଳେ ମୋତେ ସ୍ପର୍ଶ କରୁନଥିଲା । ଟକଳି, ଚର୍ଖା ଧରି କଟକରୁ ମୋର ଜଣେ ଭାଇ ଆସି ପହଞ୍ଚିଲେ । ଆମ ଗାଁ'ର ଝିଅମାନଙ୍କର ଗୋଟିଏ ଗୋଷ୍ଠୀଥାଏ । କୁଆଁର ପୁନେଇ ଗୀତ ଶିଖା, କାଉଁଚ ପାଛିଆ ବୁଣା, ରୁମାଲ ସିଲାଇ, ମୁରୁଜ ଓ ଚିତାପକା ଆଦି ଗୃହକଳା ଏକାଠି ବସି ଖରାବେଳେ ଝିଅମାନେ ଚର୍ଚ୍ଚା କରୁ ।

ଗାଁ'ର ମୁଖିଆମାନଙ୍କୁ ସୂତାକଟା ଶିଖାଇବାପାଇଁ ଭାଇଜଣକ ଆମକୁ କହିଲେ । ଆମେ ପିଉସୀ ଝିଆରୀ ହୋଇ ଛଅ କି ସାତଜଣ ଟକଳିରେ ସୂତାକାଟିଲୁଁ । କେବଳ କୌତୂହଳରେ ସେତେବେଳେ ସୂତା କାଟୁଥିଲି । ଚିରଦିନ ଖଦି ପିନ୍ଧିବି ଏକଥା ମୋ କଳ୍ପନାରେ ବି ନଥିଲା । ଏମିତି କୌତୂହଳରେ ସୂତାକାଟୁ କାଟୁ କୁଆଁର ପୁନେଇରେ ହାତକଟା ଖଦି ପିନ୍ଧିବା ପାଇଁ ସ୍ଥିର କଲୁ । ପୁଣି ପୁନେଇକୁ ବେଶୀ ଆଡ଼ମ୍ବର ପୂର୍ଣ୍ଣ ନକରି କେବଳ ଖେଳ, ଗୀତ ଓ ରାତିରେ ଝିଅମାନେ ମୁହେଁ ମୁହେଁ ଅଭିନୟ କରି ଆନନ୍ଦମନରେ ଉତ୍ସବ ପାଳନ କରିବାକୁ ଠିକ୍ କଲୁ । ଅଭିନୟ ପ୍ରଦର୍ଶନବେଳେ ସ୍ତ୍ରୀଲୋକମାନେ; ମା, ବଡ଼ମା' ପ୍ରମୁଖ ଦର୍ଶକ ହେବେ । ବିନା ବାଦ୍ୟ ଯନ୍ତ୍ରରେ ସଙ୍ଗୀତ ଓ ଅଭିନୟ ହେବ । ଝିଅମାନଙ୍କଦ୍ୱାରା ପରିବେଷିତ ହେଉଥିବା ଏହି ଅଭିନୟର ଦର୍ଶକମାନେ ହେବେ ମହିଳା । ଆଜି ମଧ୍ୟ ଶରତ ପ୍ରକୃତିର ଜହ୍ନିଫୁଲ ଓ କଇଁ ଫୁଲର କୋଠି ଉପରେ ଆଉଟାରୂପାର ଜହ୍ନ ଆଲୁଅର ଖେଳ । ପଲ୍ଲୀ ପ୍ରକୃତି ତ ନିରାଡ଼ମ୍ବର ସରାଗଭରା । ଝିଅ ଜୀବନର ଅନାବିଳ ଆନନ୍ଦ ଫଲ୍‌ଗୁ ଏ ବାର୍ଦ୍ଧକ୍ୟ ପ୍ରାଣରେ ବିସ୍ମୃତ ମଧୁର ଧାରାର ଆଭାସ ଉଦ୍ରେକ କରୁଛି । ହଁ, ମୁଁ ଡରୁଥିଲି, ମୋର ଲେଖିବାର ଅଭ୍ୟାସ ନଥିବାରୁ । ଦେଶର ଓ ଗାଁର ପ୍ରାକ୍ ସ୍ୱାଧୀନତା ଯୁଗ କଥା ଲେଖିବାକୁ ବସିବାବେଳେ ନିଜ ଅନୁଭୂତିର କଥା ନିଜ କଥାର ଚିତ୍ରଣ ଏପରି ହୋଇ ପଡୁଛି ଯେ କେହି ଭାବିବେ ନିଜ ଜୀବନୀ ଲେଖିବାକୁ ମୁଁ ବସିଛି । ସେଥିପାଇଁ ଦୁଇ ତିନିଥର ଲେଖା ଆରମ୍ଭ କରି ମୁଁ ବନ୍ଦ କରିଦେଇଥିଲି । ନିଜକୁ ମୋର ଲେଖା ପସନ୍ଦ ହୁଏ ନାହିଁ । ପୁଣି ମୋର ମନେ ହୁଏ, ମୁଁ କିଛି ନଲେଖିଲେ ସେକାଳର ପଲ୍ଲୀ ଜୀବନ, ସ୍ୱାଧୀନତା ସଂଗ୍ରାମର ଇତିହାସ ସହିତ କିପରି ଘନିଷ୍ଠ ଭାବରେ ଜଡ଼ିତଥିଲା ସେ ବିଷୟ କେତେଟା ଅଜ୍ଞାତ ରହିଯିବ । ଯାହାମୋର ଭୁଲଭାଲ ହେଉଥିବ ତାହା ବାଦ୍‌ଦେଇ ଯେତିକି ଜାଣିଲେ କିଛି ଲାଭ ହେବ ସେତକ ପାଠକେ ଗ୍ରହଣ କରିବେ । ଭୋଜିମାନଙ୍କରେ ନାନା ଉପାଦେୟ ସୁସ୍ୱାଦୁ ଖାଦ୍ୟ ସାମଗ୍ରୀ ଭିତରେ କେହି ଖାଉ ବା ନଖାଉ ଶାଗ ଟିକିଏ ପରଷାଯାଏ । ସ୍ୱାଧୀନତା ପୂର୍ବଯୁଗର ପ୍ରାଞ୍ଜଳ ଇତିହାସ ଯେତେବେଳେ ପରିବେଷିତ ହେଉଛି ସେତେବେଳେ ମୋ ନିଜକଥା ଏହି ଶାଗ ସଦୃଶ ପାଠକମାନଙ୍କୁ ତୃପ୍ତି ନଦେଇ ପାରେ ତେବେ ସେମାନେ ପଲାଉ, ମାଂସ ତରକାରି ଓ ମିଷ୍ଟାନ୍ନର ସ୍ୱାଦରେ ପରିତୃପ୍ତ ହୁଅନ୍ତୁ ନା !

# (୨)

ଗାଁ 'ରେ ସ୍ୱଦେଶୀ ପ୍ରଚାର ବେଳେ ଆମେ ଝିଅମାନେ ବିଲାତି ଲୁଗାଛାଡ଼ି ଖଦି ପିନ୍ଧିବା ଓ ଗହଣା ଛାଡ଼ିବା ଏଇ ଦୁଇଟିକଥା ଗ୍ରହଣ କଲୁ । ସେତେବେଳେ ଖବରକାଗଜରେ ଦବୁଦିନେ ବିଦେଶୀ ଜିନିଷ ବର୍ଜନ ଓ ଖଦିର ପ୍ରସାର କଥା ମହାତ୍ମାଗାନ୍ଧୀ କହୁଛନ୍ତି ବୋଲି ବାହାରୁଥାଏ । କଲିକତା ପ୍ରଭୃତି ବଡ଼ ବଡ଼ ସହରରେ ସ୍ୱଦେଶୀ ଆନ୍ଦୋଳନ ବ୍ୟାପୀଥାଏ । ଆସିଲା ୧୯୩୦ର ଅସହଯୋଗ, ଲବଣ ସତ୍ୟାଗ୍ରହ ସମୟ । ବାପୁଜୀଙ୍କ ଗ୍ରେପ୍ତାର ପରେ ସରୋଜିନୀ ନାଇଡୁଙ୍କ ନେତୃତ୍ୱରେ ଦାଣ୍ଡିଯାତ୍ରା ସଂଘଟିତ ହେଲା । ଓଡ଼ିଶାରେ ଲବଣ ସତ୍ୟାଗ୍ରହର ପ୍ରଥମ ସେନାପତି ସର୍ବଜନ ଶ୍ରଦ୍ଧାସ୍ପଦ ଆଚାର୍ଯ୍ୟ ମହାଶୟ କଟକରୁ ଯାତ୍ରା ଆରମ୍ଭ କରିଥାନ୍ତି । ତାଙ୍କ ସହିତ ସ୍ୱର୍ଗତ ପଣ୍ଡିତ ପ୍ରାଣକୃଷ୍ଣ ପଢ଼ିଆରୀ ପ୍ରଭୃତି ବହୁ ଅସହଯୋଗୀ ପଦାତିକ ବାହିନୀରେ ସାମିଲ ହୋଇ ଚାଲିଥାନ୍ତି । ଗାଁ' ଗାଁ'ରେ ଫୁଲ ଚନ୍ଦନ ଧୂପଦୀପରେ ତାଙ୍କର ଅଭ୍ୟର୍ଥନା ଓ ବନ୍ଦାପନା ହେଉଥାଏ । ଶଙ୍ଖ ହୁଳହୁଳିରେ ଗ୍ରାମପଥ ଉଲ୍ଲସିତ । ଗ୍ରାମବଧୂ ଓ ପଲ୍ଲୀବାଳାର ଅବଗୁଣ୍ଠନ ଖସିଲା । ଏକ ସ୍ୱତଃସ୍ଫୂର୍ତ୍ତ ଉତ୍ସାହ ସେମାନଙ୍କୁ ଏହି ତ୍ୟାଗପୂତ ଋଷିପ୍ରତିମଙ୍କ ଚରଣ ବନ୍ଦନା କରିବା ପାଇଁ ଆଲୋଡ଼ିତ କଲା । ପଛରେ ପ୍ରାଚୀନତାକୁ ବଜ୍ରମୁଷ୍ଟିରେ ଧରି ରଖିବାକୁ ପ୍ରୟାସୀ ପ୍ରବୀଣମାନେ ଯେ କଡ଼ା ଆକଟ ଅସ୍ତ୍ର ପ୍ରୟୋଗ କରି ନଥାନ୍ତି ତାହା ନୁହେଁ କିନ୍ତୁ ଏ ବିପ୍ଳବ ପ୍ରବାହର ଧକ୍‌କାକୁ ରୋକିବାକୁ ତାହାର ଶକ୍ତି ନଥିଲା ।

'ଅସହଯୋଗର ପବିତ୍ର ସରିତ
ଉତ୍କଳର ବକ୍ଷେ ହେଲା ପ୍ରବାହିତ ।'

ଆମ ଗାଁ ବାଟେ ଅସହଯୋଗୀମାନଙ୍କ ପଟୁଆର ଗଲାବେଳେ ଆମେ ଝିଅମାନେ ତାଙ୍କର ଅଭ୍ୟର୍ଥନା କଲୁ । ପ୍ରାଚୀନପନ୍ଥୀ ମୁରବୀମାନେ ଦୂରରେ ଠିଆ ହୋଇ ଭକ୍ତି, ଭୟ, ଲଜ୍ଜା ଓ ଶାସନ ଶକ୍ତି ସମ୍ମିଶ୍ରଣ ଯୋଗୁଁ ରୋଷକଷାୟିତ ଚକ୍ଷୁରେ ଆମକୁ ଦେଖୁଥାନ୍ତି । ମୋତେ ସେତେବେଳେ ତେର ବର୍ଷ ବୟସ । ଦାଣ୍ଡ ବାହାରକୁ ବାହାରିବା ନିଷେଧ । ପ୍ରଥମନମ୍ବର ଅପରାଧରେ ମୁଁ ଦୋଷୀ ସାବ୍ୟସ୍ତ ହେଲି ସମାଜର ଦରବାରରେ । ଯାହା କହନ୍ତି, 'ଶାଗ ହୋଇ ଅଲଣା- ଝିଅ ହୋଇ ବୋଲଣା !' ମା' ନାହିଁ ଉପର ମୁହିଁ ଝିଅଟା ବୋଲି ଲୋକେ ଆକଟିଲେ । ମୋ ଗୋସମା' ବୁଢ଼ୀ ଅନ୍ୟମାନଙ୍କ ଠାରୁ ଟିକିଏ ବେଶୀ ସଂସ୍କାରପନ୍ଥୀ । ତାଙ୍କର ବୟସ କାଳଟା କଟକରେ କଟିଛି । ସାଆନ୍ତ ବାପା ଆମର ସରକାରୀ ଅଫିସରେ ଦାୟିତ୍ୱପୂର୍ଣ୍ଣ କାମରେ ଥିଲେ । ବିଦେଶୀ ପାନୀୟ ପ୍ରଭୃତି ବିଳାସ ସାମଗ୍ରୀର ଚିହ୍ନ ବି ଆମ ହେତୁ ପାଇବା ପର୍ଯ୍ୟନ୍ତ ଆମଘରେ କିଛି କିଛି ଥିଲା ।

ଆଚାର୍ଯ୍ୟ ମହାଶୟଙ୍କ ଇଞ୍ଚୁଡ଼ି ଚଟାଣକୁ ଯାତ୍ରା ପରେ ପରେ ଦ୍ୱିତୀୟ- ସେନାପତି ଓଡ଼ିଶାର ଶାସନ କ୍ଷେତ୍ରକୁ ଦୋହଲାଇ ଦେଇଥିବା ଆଜନ୍ମ ଦୃଢ଼ ପ୍ରତିଜ୍ଞ କଠୋର ସାଧକ ବାପା ସ୍ୱର୍ଗତ ଗୋପବନ୍ଧୁ ଚୌଧୁରୀଙ୍କ ନେତୃତ୍ୱରେ ଦ୍ୱିତୀୟ ବାହିନୀ ଚାଲିଲାବେଳକୁ ସରକାର ସେମାନଙ୍କୁ କଟକ ସହର ଉପକଣ୍ଠରୁ ଧରିନେଲେ । ସେତେବେଳକୁ ଉତ୍କଳମଣିଙ୍କର ତିରୋଧାନ ହୋଇ ସାରିଥାଏ । ଇଞ୍ଚୁଡ଼ି ଚଟାଣରେ ଉତ୍କଳର ବରପୁତ୍ରୀ; ଜାହ୍ନବୀଦେବୀ, ସରଳା ଦେବୀ, ମା' ରମାଦେବୀ, ସୁଭଦ୍ରା ମହତାବ, କୋକିଳା ଦେବୀ ପ୍ରଭୃତିଙ୍କର ବାହିନୀ ପରିଚାଳନା ସେତେବେଳର ତାଜା ଖବର । ସୁଭଦ୍ରା ଦେବୀଙ୍କ ସହିତ ବାଲେଶ୍ୱରର ବହୁ ପଲ୍ଲୀବାଳା ମଧ ଆନ୍ଦୋଳନର ଅନୁଗାମିନୀ ହୋଇଥାନ୍ତି । ମୈନାବିବି, ମାଳତୀ ଦେବୀ, କ୍ଷେତ୍ରମଣି ଦେବୀ (ଭୋଳାନାଥ ବାବୁଙ୍କ ସ୍ତ୍ରୀ) ପ୍ରଭୃତି ଥା'ନ୍ତି । କଟକରେ ମା' ରମାଦେବୀ, ନୁମା (ମାଳତୀ ଚୌଧୁରୀ), ସରଳା ଦେବୀ ପ୍ରଭୃତି ସତ୍ୟାଗ୍ରହୀମାନଙ୍କର ଯତ୍ ସାମାନ୍ୟ ଆହାରାଦି ସଂଗ୍ରହ ନିମନ୍ତେ ଓ ଆନ୍ଦୋଳନର ସମ୍ବାଦ ସରବରାହାଦି କାମ ପାଇଁ ଗ୍ରାମେ ଗ୍ରାମେ ସଭା କରି ଲୋକମାନଙ୍କୁ ବୁଝାଉଥାନ୍ତି । ପାଣ୍ଠି ମଧ ସଂଗ୍ରହ କରୁଥାନ୍ତି । ଗାଁ'ର ଝିଅ ବୋହୂମାନେ ଦେହରୁ ଗହଣା କାଢ଼ି ଚାନ୍ଦା ଦେଉଥାନ୍ତି । ବହୁ ହାଇସ୍କୁଲର ପିଲାମାନେ ଆନ୍ଦୋଳନରେ ଯୋଗ ଦେବାକୁ ବାହାରି ପଡ଼ିଥାନ୍ତି । ସେତେବେଳେ ପ୍ରଚାରର ମାଧମ ପାଇଁ ବ୍ୟବହୃତ ଉତ୍କଳମଣିଙ୍କ 'ବନ୍ଦୀର ଆତ୍ମକଥା', ମହତାବ ବାବୁଙ୍କ 'ପଲାସୀ ଅବସାନେ', କୁନ୍ତଳା କୁମାରୀଙ୍କ 'ଆହ୍ୱାନ', କାନ୍ତକବି ଲକ୍ଷ୍ମୀକାନ୍ତଙ୍କ 'ଜାତୀୟ ସଙ୍ଗୀତ', ବାଞ୍ଛାନିଧିଙ୍କ ଉନ୍ମାଦନା ସୃଷ୍ଟିକାରୀ ସଙ୍ଗୀତ ଓ ଜାତୀୟକବି ବୀରବାବୁଙ୍କର 'ମୋହନ ବଂଶୀ' ଜଡ଼ପାଷାଣର ପ୍ରାଣ ସଞ୍ଚାର କରିଦେଲା ।

ସହର ଓ ଗାଁର ପିଲାମାନଙ୍କ ଠାରୁ ଆରମ୍ଭକରି ଗାଁର ଗାଈଆଳ ପିଲାଙ୍କ ପର୍ଯ୍ୟନ୍ତ ହାତରେ ଚକଲି ଓ ମୁହଁରେ ଜାତୀୟ ସଙ୍ଗୀତ ମୁଖରିତ ହେଲା । ବାହାରି ପଡ଼ିଲେ ବାନରସେନା । ବେଶୀ ଭାଗ ମଫସଲରୁ ସରଳ ଓ ବେପରୱା ସ୍କୁଲ ପିଲା ଭାଗନେଲେ ଏଥିରେ । ମାଡ଼, ଜେଲ, ବୁଟ୍ ପାହାର ସବୁ ସେ ବାନରଙ୍କ ପାଖରେ ତୁଚ୍ଛ । ପୋଲିସବାଲାଙ୍କୁ ଖତେଇ ହେବା ଛିଗୁଲେଇବା ସେ ମାଙ୍କଡ଼ଙ୍କ କାମ । ସେତେବେଳେ କଟକର ସ୍ୱରାଜ ଆଶ୍ରମରେ ସବୁବେଳେ ହୋ ହା ପୂରି ରହିଥାଏ । ଆମ ଗାଁକୁ ମା' ରମାଦେବୀ, କଳ ମାଉସୀ ଓ କୋକିଳ ଦେବୀ ସଭା କରିବାକୁ ଯାଇଥାନ୍ତି । ଗାଁ'ରେ ବୁଲି ଚାନ୍ଦା ସଂଗ୍ରହ କଲେ । ଉପରବେଳା ସଭା ହେଲା । ମୋର ସାଙ୍ଗ ଝିଅମାନେ ସେମାନଙ୍କ ସାଙ୍ଗରେ ଘରେ ଘରେ ବୁଲିଲେ । କିନ୍ତୁ ସଭାକୁ ଯିବାର ସାହସ କାହାରି ଅଣ୍ଟିଲା ନାହିଁ । ମୁଁ ତ ବେପରୱା । ଆଗନ୍ତୁକମାନଙ୍କ ସହିତ ଗାଁ'ର ଶେଷ ମୁଣ୍ଡରେ ହେଉଥିବା ସଭାକୁ ଚାଲିଗଲି । ସଭାର ତାତ୍ପର୍ଯ୍ୟ ଲୋକେ କିଛି ବୁଝନ୍ତୁ କି ନ ବୁଝନ୍ତୁ କଟକର ବିଶିଷ୍ଟ ସମ୍ଭ୍ରାନ୍ତ ବଂଶର ଝିଅ ତଥା

ବୋହୂ ରମାଦେବୀ ଆସି ସଭାରେ ଠିଆ ହୋଇ ଭାଷଣ ଦେଉଛନ୍ତି ଏହା ଲୋକମାନଙ୍କୁ ଚକିତ କରି ଦେଇଥିଲା । ଏଥିରେ ଅନୁପ୍ରାଣିତ ହୋଇ ମୁଁ ମଧ୍ୟ ସେହି ବୟସରେ ଆଗ୍ରହାତିଶଯ୍ୟରେ ଆମର ପିତୃ ପୁରୁଷ ବାବାଜୀ ମୁକୁନ୍ଦ ଦାସଙ୍କ ପୀଠରେ ରାତିରେ ହୋଇଥିବା ମହିଳା ସଭାରେ ବକ୍ ବକ୍ ହୋଇ କ'ଣ ଦି'ପଦ କହି ପକାଇଲି । ପଛରେ ମୋତେ ବଡ଼ ସଙ୍କୋଚବୋଧ ହେଲା । ଗାଁର ସ୍ତ୍ରୀଲୋକମାନଙ୍କ ଠାରୁ ସାମାନ୍ୟ କିଛି କିଛି ଗହଣା ଓ ଟଙ୍କା ଚାନ୍ଦା ମିଳିଥିବ । ଆର୍ଥିକ ଲାଭ ଯେତିକି ହେଉ ନ ହେଉ ଜଣେ ସ୍ତ୍ରୀଲୋକ ଯେ ସଭାରେ ଠିଆ ହୋଇ ଶହ ଶହ ଲୋକଙ୍କୁ ସ୍ୱାଧୀନତାର ବାର୍ତ୍ତା ଶୁଣାଇ ଯାଉଛନ୍ତି ତାହା ଦେଖି ଗାଁ'ର ଅଲୋଡ଼ା ମାଇପି ଜୀବନର ମଧ୍ୟ କିଛି ମହତ୍ତ୍ୱ ଅଛି ବୋଲି ଅନେକ ଅନୁଭବ କରିଥିବେ ।

ସେ ଦିନର ସାଧାରଣ ସଭାରେ ଯୋଗଦେବା ଫଳରେ ମୁଁ ଅନେକଙ୍କର ଘୃଣା ଓ ସମାଲୋଚନାର ପାତ୍ରୀ ହେଲି । ମୁଁ ନିମ୍ନ ପ୍ରାଇମେରୀ ଶ୍ରେଣୀରେ ପଢୁଥିବାବେଳେ ବୃତ୍ତି ପରୀକ୍ଷା ଦେଉଥିଲେ ସୁଦ୍ଧା ମୋର ପଢ଼ା ବନ୍ଦ ହୋଇ ଯାଇଥିବାରୁ ବୃତ୍ତି ପାଇବାର କଥା ନୁହେଁ । ବୋଉଥିଲେ ଆଉ ଅଧିକା ପଢ଼ିବାକୁ କଟକ ଫଟକ ଯିବା ପାଇଁ ସିନା ରୋକ କରିଥାନ୍ତି । ପଢ଼ା ତ ମୋର ସେତିକିରୁ ଡୋରି ବନ୍ଧା ହୋଇଥିଲା । ଗାଁର ସ୍ୱତନ୍ତ୍ର ବାଳିକା ୟୁ.ପି. ସ୍କୁଲ ସେବର୍ଷ ଖୋଲି ଥିଲେ ମଧ୍ୟ ମୋ ଭାଗ୍ୟରେ ପାଠପଢ଼ା ଜୁଟିଲା ନାହିଁ । କାରଣ ମୋତେ ସେତେବେଳକୁ ତେର ବର୍ଷ ଚାଲିଲାଣି । 'କନିଆରାଝିଅ, ଆଉ କି ପାଠ ପଢ଼ା ?' ମୋ ମନ ବିଦ୍ରୋହ ଓ ଅସାମର୍ଥ୍ୟ ଉଭୟ ଭାବରେ ପୀଡ଼ିତ ଥିଲା । ମୁଁ ମା' ରମାଦେବୀଙ୍କୁ ଜଣାଇଲି ମୋତେ ନେଇ ଅନ୍ୟତ୍ର କେଉଁଠି ପଢ଼ାଇବାର ବ୍ୟବସ୍ଥା କରିଦେବାକୁ ଓ ତତ୍‌ସହିତ ଦେଶ କାମରେ ମୋତେ ସାମିଲ କରାଇବାକୁ । କିନ୍ତୁ ସେତେବେଳେ ଏ ଉଭୟ କଥା ଏକା ସାଙ୍ଗରେ ହେବା ଅସମ୍ଭବ ଥିଲା । ପାଠ ପଢ଼ା ପିଲା ହାଇସ୍କୁଲ ଛାଡ଼ି ଆସି ଆନ୍ଦୋଳନରେ ଯୋଗ ଦେଉଥାନ୍ତି । ସତ୍ୟାଗ୍ରହୀ ହୋଇ ଲାଠିମାଡ଼, ବୁଟ୍ ମାଡ଼ ଖାଇ ଜେଲ ବରଣ କରୁଥାନ୍ତି ।

ମୁଁ ତାଙ୍କ ପାଖକୁ କଟକ ଚିଠି ପତ୍ର ଲେଖିଲି । ଗାଁରେ ସୂତାକଟା ଓ ଖବରକାଗଜ ପଢ଼ା କାମ ଆମେ ସବୁ ଝିଅମାନେ ନିଷ୍ଠାପର ଭାବରେ କଲୁଁ । ଗାନ୍ଧିଜୀଙ୍କ ଗୀତାର ଭାଷ୍ୟ ଅନାସକ୍ତି ଯୋଗର ବଙ୍ଗଳା ଅନୁବାଦ ଓ ହିନ୍ଦୀସ୍ୱରାଜ ଦୁଇଖଣ୍ଡ ବହି ପଢ଼ିବାକୁ ପାଇଲି । ଗୀତାର ଅନାସକ୍ତି ସରଳତତ୍ତ୍ୱ ଓ ଗାନ୍ଧିଜୀଙ୍କ ମତାମତ ପୁଣି ହିନ୍ଦୀ ସ୍ୱରାଜରେଥିବା ଗାନ୍ଧିଜୀଙ୍କ ସ୍ୱାଧୀନତା ପରବର୍ତ୍ତୀକାଳର ଭାରତ ଓ ଶୋଷଣ ହୀନ ସମାଜ ଗଠନର ଆଭାସ ମୋ ମନରେ ରେଖାପାତ କଲା । ଆମେ ସବୁଝିଅମାନେ ଗାଁ'ର ବୁଢ଼ୀମାନଙ୍କୁ ପୁରାଣ ପଢ଼ି ଶୁଣାଉ । ମୋର ପିଉସୀ ନୟନଦେଈ ବେଶୀ ସେ କାମ କରୁଥିଲା । ସେ ନ ପଢ଼ିବାବେଳେ ମୁଁ ସେ ସବୁ ଆପେ ଆପେ ପଢ଼ି ପକାଉଥିଲି । 'ଦାର୍ଢ୍ୟତା ଭକ୍ତି', 'ମାର୍କଣ୍ଡ ପୁରାଣ',

'ରାମାୟଣ', 'ମହାଭାରତ' ପ୍ରଭୃତି ଶୁଣିବାକୁ ବୁଢ଼ୀମାନେ ଖରାବେଳେ ତାକୁ ଧରନ୍ତି । ମୁଁ ତା ପାଖରେ ଥାଏ । ପୁରାଣ ପଢ଼ା ପରେ ଆମର ଖବର କାଗଜ ପଢ଼ା, ସୂତାକଟା ଓ ସିଲେଇ ଶିକ୍ଷା ଆଦି କାମ ଚାଲେ । ବିଲାତି ଲୁଗା ବର୍ଜନ ଓ ସ୍ୱଦେଶୀ ଜିନିଷ ବ୍ୟବହାର କଥା ଖବର କାଗଜରେ ପ୍ରକାଶ ପାଉଥାଏ । ସେ କଥା ମଧ୍ୟ ଆଲୋଚନାରେ ସ୍ଥାନ ପାଏ ।

## (୩)

ଅସହଯୋଗ ଆନ୍ଦୋଳନରେ କଟକ, ପୁରୀ, ବାଲେଶ୍ୱର ସହିତ ଗଞ୍ଜାମ ଜିଲ୍ଲାର ସ୍ଥାନ ମଧ୍ୟ ବଡ଼ ଗୁରୁତ୍ୱପୂର୍ଣ୍ଣ ଥାଏ । 'ଦୈନିକ ଆଶା' ଦୈନିକ ସମ୍ବାଦପତ୍ର ରୂପେ ପ୍ରକାଶିତ ହେଉଥାଏ । ଶଶୀଭୂଷଣ ରଥ ତାର ସମ୍ପାଦକ ଥା'ନ୍ତି । ସବୁ ନେତାମାନଙ୍କର ଦଶା ତାଙ୍କର ବି ଘଟିଥାଏ । ସମସ୍ତେ ଥାଆନ୍ତି ଜେଲରେ । 'ଦୈନିକ ଆଶା'ର ଶିରୋନାମା ତଳକୁ ପ୍ରତିଦିନ ଲେଖା ହେଉଥାଏ, 'ଶଶିବାବୁ ଜେଲରେ ଆଜିକୁ ଏତେ ଦିନ' । ଦିନାଙ୍କ ତାଙ୍କ ଗିରଫ ଦିନଠୁଁ ଗଣା ଯାଉଥାଏ । ହଠାତ୍ ସେହି ଲାଇନ୍ ଉପରେ ଆଖି ପଡ଼ିଯାଏ ବୋଲି ଖୁବ୍ କୌତୂହଳରେ ସେହି ସମ୍ବାଦଟି ପଢ଼େଁ । ଏବେ ବି ମନେ ପଡୁଛି- ମା' ରମାଦେବୀ, ସରଳା ଦେବୀ ପ୍ରଭୃତି ଧରା ହୋଇ ମାଡ୍ରାସ୍ର ଭେଲୋର ଓ ବିହାରର ହଜାରିବାଗକୁ ପଠା ହୋଇଥିବାର ଖବର ପଢ଼ିଥିବାର । ବାଲେଶ୍ୱରର ଜାହ୍ନବୀ ଦେବୀ, ସୁଭଦ୍ରା ଦେବୀଙ୍କ ସହିତ ପଦ୍ମାଦେବୀ (ବାଲେଶ୍ୱରର ଦାମୋଦର ମହାପାତ୍ରଙ୍କ ସ୍ତ୍ରୀ) ପ୍ରଭୃତି ନାରୀକର୍ମୀମାନେ ବିହାରର ଭାଗଲପୁରଜେଲରେ ବନ୍ଦିନୀ ଥିଲେ । ସେତେବେଳକୁ ଓଡ଼ିଶା ସ୍ୱତନ୍ତ୍ର ପ୍ରଦେଶ ନଥିଲା । ପାଟଣା ବିଶ୍ୱ ବିଦ୍ୟାଳୟ ଅଧୀନରେ ଓଡ଼ିଶାର ଶିକ୍ଷା ନିୟନ୍ତ୍ରଣ ହେଉଥିଲା । ବିହାର-ଓଡ଼ିଶା ପ୍ରଦେଶ ବୋଲି ଲେଖା ହେଉଥିଲା । ବ୍ୟବସ୍ଥାପକ ସଭା ପାଟଣାରେ ଥିଲା । ଓଡ଼ିଶାର ପ୍ରତିନିଧିମାନେ ବନ୍ୟା, ଘର ପୋଡ଼ି ପ୍ରଭୃତି ଅବସ୍ଥା ପାଟଣା କାଉନ୍‌ସିଲରେ ଜଣାଉଥିଲେ । ଉତ୍କଳମଣି ପଣ୍ଡିତ ଗୋପବନ୍ଧୁ ଦାଶ ଓ ମିଷ୍ଟର ଦାସ (ମଧୁସୂଦନ ଦାସ)ଙ୍କ ନାମ ସେ ସଂକ୍ରାନ୍ତରେ ସମସ୍ତେ ଜାଣୁଥିଲେ । ନେତା ଓ ନେତ୍ରୀମାନେ ଗିରଫ ହୋଇଯିବାପରେ ଖଦିକାମ ସବୁଆଡ଼େ ଖୁବ୍ ଜୋରରେ ଚାଲିଥାଏ । ଗଞ୍ଜାମ ଜିଲ୍ଲାରେ ମଧ୍ୟ ଏହା ଜୋରରେ ଚାଲିଥିଲା । ସେଠାରେ ମୋର ଜଣେ ପୂଜ୍ୟ ଆତ୍ମୀୟ ଶିକ୍ଷାବିଭାଗର ଡି.ଆଇ. ପୋଷ୍ଟରେ ଥିଲେ । ସେ ଖଦିକର୍ମୀମାନଙ୍କ ସହିତ ସହଯୋଗ କରି ନିଜେ ଖଦି ପିନ୍ଧି ସୂତାକଟା ନିଜଘରେ ଚାଲୁକରିବାରୁ ମାଡ୍ରାଜ ସରକାର ତାଙ୍କୁ କାର୍ଯ୍ୟଚ୍ୟୁତ କଲେ । ସେତେବେଳେ ଗଞ୍ଜାମଜିଲ୍ଲା ମାଡ୍ରାଜ ସରକାରଙ୍କ ଅଧୀନରେ ଥାଏ । ଓଡ଼ିଶାର ଅଙ୍ଗ ପ୍ରତ୍ୟଙ୍ଗ ବିଭିନ୍ନ ପ୍ରଦେଶର ଶାସନାଧୀନ

ଥିଲା । ହଁ, ମୋର ସେହିଦାଦା ଆମ ଗାଁ'ର ପ୍ରତିଷ୍ଠିତ ପଟ୍ଟନାୟକ ପରିବାରର ସବୁଠାରୁ କୃତୀ ସନ୍ତାନ ଥିଲେ । ତାଙ୍କର ମହତ୍‌ଗୁଣ ଯୋଗୁଁ ଗାଁରେ ସେ ସମସ୍ତଙ୍କର ସ୍ନେହ ଓ ସମ୍ମାନର ଅଧିକାରୀ ହୋଇ ପାରିଥିଲେ । ତାଙ୍କର ନିଷ୍ଠାପରତା ଓ ନୀତି ପରାୟଣତା ପାଇଁ ସେ ଚାକିରି ଜୀବନ ଓ ସାଧାରଣ ଜୀବନରେ ଥିଲେ ବହୁ ଆଦୃତ । ତାଙ୍କ ନାଁ ଲାଲ ବିହାରୀ ପଟ୍ଟନାୟକ । ତାଙ୍କୁ ବଡ଼ମାନେ 'ନାଲା' ବା 'ନାଲୁ' ଓ ସାନମାନେ 'ଲାଲା ଦାଦା' 'ଲାଲା ଭାଇ' ଡାକନ୍ତି । ଚାକିରି ଯିବା ପରେ ମଧ୍ୟ ସେ ଗଞ୍ଜାମର ଖଦିକାମ ସହ ବେଶୀ ଜଡ଼ିତ ଥିଲେ । ଥରେ ଗାଁ'କୁ ଆସିଥିବାବେଳେ ଆମମାନଙ୍କ କାମ ଦେଖି ବହୁତ ଖୁସି ହୋଇଥିଲେ । ହେଲେ ଆମେ ସବୁ ସେବର୍ଷ ଅଗିରା ପୁନେଇରେ ଅଗି ଜଳାଇ ବିଲାତି ଲୁଗା ପୋଡ଼ିଲୁ । ମାଘ ମାସ ପୂର୍ଣ୍ଣିମାଦିନ ଗାଁରେ ଅଗ୍ନି ଉତ୍ସବ ହୋଇ ଅଗିଜଳାଯାଏ । ଝିଅମାନେ ସକାଳୁ ଉଠି ଗାଁ'ଯାକର ଦାଣ୍ଡ ପହଁରି ପରିଷ୍କାର କରନ୍ତି । ଆହୁରି ମଧ୍ୟ ଚାନ୍ଦାକରି ଏକାଠି ଭୋଜିଭାତ, କ୍ଷୀରି, ଖେଚୁଡ଼ି କରି ଗାଁର ପିଲା, ବୁଢ଼ା, ଦୁଃଖୀ, ଗରିବଙ୍କୁ ଖୁଆନ୍ତି । ପରଦିନ ସକାଳେ ଅଗି ଜାଳିଥିବା ସ୍ଥାନ ପରିଷ୍କାର କରି ନୂଆ ଲୁଗା ପିନ୍ଧି ଅଗ୍ନି ଓ ସୂର୍ଯ୍ୟଙ୍କୁ ପୂଜା କରନ୍ତି । ଏସବୁ ପୂର୍ବ କାଳର ପଲ୍ଲୀଜୀବନର ନିରୋଳାକୁ ଟିକିଏ ଉତ୍ସାହ ପ୍ରଦ କରିଦିଏ ।

ସେଥର ଅଗି ପୁନେଇରେ ଆମର ବିଲାତି ଲୁଗା ପୋଡ଼ାକଥା ଶୁଣି ନାଲାଦା ବହୁତ ଖୁସି ହେଲେ । ଅବଶୋଷ ମଧ୍ୟ କଲେ । ବିଲାତି ଲୁଗା ସିନା ପୋଡ଼ିଲେ ଖଦି ନିୟମିତ ନ ପିନ୍ଧିଲେ ଏ ସବୁର ଅର୍ଥ ନାହିଁ । ଏଟା ଗୋଟାଏ ଉପହାସର କଥା ହେବ । ତା'ପର ଠାରୁ ମୋତେ କେବେ ବିଲାତି ଲୁଗା ପିନ୍ଧିବାକୁ ପଡ଼ି ନାହିଁ । ଗାଁକୁ ଖଦି ବିକ୍ରି କରିବାପାଇଁ ସ୍ୱଦେଶୀ ପ୍ରଚାର ବାଲା ଆସିଲେ । ମୋର ଆଗ୍ରହ ଯୋଗୁଁ ବାପା ମଧ୍ୟ ଦି'ଖଣ୍ଡ ଖଦିଲୁଗା କିଣିଦେଲେ । ମୁଁ ଯେଉଁ ସମୟର କଥା କହୁଛି ସେତେବେଳେ କେହି କେବେ ବେଶ ବିନ୍ୟାସରେ ବିଭ୍ରମ ନ ହୋଇ ସଂଯମରେ ଚଳୁଥିଲା । ସେ ସମୟରେ ଶାରୀରିକ ସୌନ୍ଦର୍ଯ୍ୟକୁ ବାହାରେ ପ୍ରକାଶ କରିବାକୁ ସମସ୍ତେ ଘୃଣା କରୁଥିଲେ । ସୌନ୍ଦର୍ଯ୍ୟକୁ ଲୁଚାଇବା ଥିଲା ସେ ଯୁଗର ଝିଅ ବୋହୂଙ୍କର ନୀତି । ଅବଶ୍ୟ ବେଶୀ ତଳଘଟି ମଫସଲର ବୟସ୍କା ସ୍ତ୍ରୀ ଲୋକମାନେ ଫାଳେ କଛା ମାରି ଲୁଗା ପିନ୍ଧୁଥିଲେ । କିନ୍ତୁ ଆମ ଗାଁମାନଙ୍କରେ ଗଉଡୁଣୀ ଓ ତେଲୁଣୀ ଯେଉଁମାନେ ହାଟୁଆ ବା ପାଟକ ଜାତିର, ଗାଁ'ରେ ପସରା ଧରି କିଣା ବିକା କରନ୍ତି ସେମାନେ ବାରହାତି ଶାଢ଼ୀକୁ ଏକ ପ୍ରକାର କଛା ମାରି ପିନ୍ଧୁଥିଲେ । ଯେମିତି କେବେ ହେଲେ ଦେହରୁ ଲୁଗା ଖସିବ ନାହିଁ । ହାଟୁଆ ଝିଅମାନେ ଯେଉଁଭଳି ସୁନ୍ଦର ଭାବରେ ମୁଣ୍ଡରେ ଜୁଡ଼ା ବା ଜଟ ପାରୁଥିଲେ ଓ କେଶବିନ୍ୟାସ ଯେଉଁପରି କଳାପୂର୍ଣ୍ଣଥିଲା, ଆଜିର ଅତ୍ୟାଧୁନିକାମାନେ ଫେସନର ବିବର୍ତ୍ତନବାଦରେ ସେହି ଶୈଳୀକୁ ପୁଣି ଗ୍ରହଣ କରି ନେଲେଣି । ହଁ, ମୁଁ ବିଷୟ ବସ୍ତୁରୁ ଦୂରକୁ ଚାଲିଯାଇ କଥା ଛାଡ଼ିଗଲି ।

ଆମେ ବିଲାତି ଲୁଗା ପୋଡ଼ିଲୁ ଅଗିରା ପୁନେଇ ଅଗ୍ନିରେ ଆହୁତି ଦେଇ । କାଗଜରେ ବି ସବୁ ବାହାରୁଥାଏ କଟକ, କଲିକତା ପ୍ରଭୃତି ବଡ଼ବଡ଼ ସହରରେ ବିଲାତିଲୁଗା ଠୁଳ କରି ଲୋକେ ପୋଡ଼ି ଦେଉଥାନ୍ତି । ନିଜ ଆଗ୍ରହ ଓ ଉତ୍ସାହରେ ସେ ପୋଡ଼ିବା କିନ୍ତୁ ଆଜିକାଲିକାର ବିପ୍ଳବୀମାନେ ଷ୍ଟେଟ ବସ, ରେଳ ଇତ୍ୟାଦି ପୋଡ଼ିବା ପରି ନୁହେଁ । ତାହା ଦେଶର ପରାଧୀନତା ଓ ଅକ୍ଷମତାକୁ ଅନଳରେ ଧ୍ୱଂସ କରି ସ୍ୱାଧୀନତା ଓ ସ୍ୱାବଲମ୍ବୀ ହେବା ପାଇଁ ଉଦ୍ଦିଷ୍ଟ ଥିଲା । ତାହାଥିଲା, ଆମର ରାତ୍ରିରେ ଅଗ୍ନି ପୂଜାପରେ ସକାଳେ ପ୍ରଭାତୀ ସୂର୍ଯ୍ୟଙ୍କୁ ବନ୍ଦାପନା କରି ଅରୁଣୋଦୟକୁ ସ୍ୱାଗତ କଲାପରି । ଆଗାମୀ ସ୍ୱାଧୀନତାର ରବିଙ୍କ ବନ୍ଦନା କରିବାକୁ ଯାଇ ବୋଲାଯାଉଥିଲା-

'ପ୍ରାଚୀ ଗଗନଶିରେ
ଭାସି କନକ ନୀରେ
ଆସୁ ତପନ ଉଇଁ
ଏ ଉତ୍କଳ ଭୁବନେ ।'
'ଗାଅ ସ୍ୱାଧୀନ ଭାରତ
ସ୍ୱାଧୀନ ସ୍ୱାଧୀନ ସ୍ୱାଧୀନରେ
ଗାଏ ସାଗର ଭୂଧର ଅମ୍ବର ଚୁମ୍ବିତ
ଭାଲେ ହିମାଚଳ ଗିରିବର କମ୍ପିତ ।'

ଏଥିଲା କବିମାନଙ୍କର ଉଚ୍ଛ୍ୱସିତ ପ୍ରାଣର ସ୍ୱତଃ ସ୍ଫୂର୍ତ୍ତ ପ୍ରବାହର ବାଣୀ । ସ୍ୱାଧୀନତାର ସ୍ୱପ୍ନରେ ଦେଶର ଜନତା ବିହ୍ୱଳ । ପୁଲିସ୍ ଓ ସରକାରୀ ଶାସକମାନେ ନିଜ କର୍ତ୍ତବ୍ୟ ପାଳନ କରିବାରେ ଖୁବ୍ ତତ୍ପର ଥିଲେ ମଧ ତାଙ୍କ ହୃଦୟ ଭିତରେ ଅନ୍ତର ପ୍ରଦେଶ ଥିଲା ଦେଶପ୍ରୀତିରେ ସିକ୍ତ ।

ନାଲାଦା' ଆମରି ଝିଅମାନଙ୍କ ସଂଘକୁ ଗୋଟିଏ ନାମଦେବାକୁ କହିଲେ । ଆଗରୁ ଝିଅମାନଙ୍କର ଦଳଥିଲା ସିନା କିନ୍ତୁ କିଛି ନାଁ ନଥିଲା । ନାଲାଦା' ନାଁଦେଲେ 'କୁମାରୀ ସଂଘଦ' । ଆମ ସଂସଦ ନେତାମାନଙ୍କର କାରାବାସବେଳେ ଜୋର୍ ସୋର୍‌ରେ କାମ କରୁଥାଏ । ନାଲାଦା'ଙ୍କୁ ମୁଁ ଧର୍ମବାପା କରିଥିଲି । ତାଙ୍କରି ନିର୍ଦ୍ଦେଶରେ ହିନ୍ଦୀ ପଢ଼ା ଆରମ୍ଭ କରିଦେଲି ବିନା ବହିରେ । ସେ ସାତ ଦିନରେ ଥରେ ହିନ୍ଦୀ ବର୍ଣ୍ଣମାଳା, ବନାନ ଇତ୍ୟାଦି ଗୋଟିଏ ଚାରିଛଅ ପୃଷ୍ଠାର ଲେଖିପଠାନ୍ତି । ସେଥିରେ ଅନେକ ଉପଦେଶ, ମଣିଷର ଚରିତ୍ର ଗଠନ ପାଇଁ, ଦେଶର ସମସ୍ୟା, ମହାତ୍ମାଗାନ୍ଧୀ ପ୍ରଭୃତି ବଡ଼ ବଡ଼ ମନୀଷୀଙ୍କ ବାଣୀର ଲେଖା ଓ ଆଲୋଚନା ହୋଇଥାଏ । ପୁଅପିଲା, ଯେଉଁମାନେ ସତ୍ୟାଗ୍ରହ ପ୍ରବାହରେ ଆକର୍ଷିତ

କିନ୍ତୁ ମୁରବିମାନଙ୍କ ଶାସନ ଏଡ଼ିବାକୁ ଅକ୍ଷମ ସେମାନଙ୍କ ପାଇଁ ଗ୍ରାମ ସଫେଇ, ହରିଜନ ସେବା, ସୂତାକଟା, ବଗିଚାକାମ, କପାଚାଷ ଓ ଲୁଗାବୁଣା ଇତ୍ୟାଦି ଗଠନମୂଳକ କାର୍ଯ୍ୟ କରିବା ପାଇଁ ଉଦଳାରୁ ମୋଟା ମୋଟା ଚିଠି ସେ ପଠାନ୍ତି । ଭାଷଣସବୁ ମଧ ପଢ଼ିବାପାଇଁ ପଠାଇଥାନ୍ତି । ମୁଁ ସେସବୁ ଚିଠି ମାଗିନେଇ ପଢ଼ି ସାଧନା ଆରମ୍ଭ କଲି । ଆମ ଗାଁର ନଈତୁଠ ଓ ବନ୍ଧକୁ ଲୋକମାନେ ଦୂଷିତ  କରି ଦେଇଥାନ୍ତି । ସେ ସବୁ କଥା ମନେ ପଡ଼ିଲେ ଏବେ ବି ବାନ୍ତି ଲାଗୁଛି । ହତଭାଗ୍ୟ ଲୋକଙ୍କ ପ୍ରତି ଘୃଣା ଓ କରୁଣା ହେଉଛି । ଏକା ଏକା ମୁଁ ମଧ ନଈକୂଳରୁ ମଇଳା ସଫା କଲି । ସବୁକଥାକୁ ନାକଟେକିବାର ଯେଉଁ ସ୍ୱଭାବ ମୋର ଥିଲା ତାକୁ ଛଡ଼ାଇବା ପାଇଁ ହାତରେ ମଇଳା ଉଠାଇ ନେଇ ମାଟି ଓ ବାଲି ତଳେ ପୋତିଦେବା କାମ ଆରମ୍ଭ କଲି । ନଈରେ ଆସି ବାଲି, ଗୋବର ଓ ମାଟିରେ ହାତ ଘଷୁ ଘଷୁ ଘଣ୍ଟାଏ ଦେଢ଼ ଘଣ୍ଟା ବିତିଯାଏ ସିନା ଅସନା ଲାଗିବା ମୋର କମେ ନାହିଁ ।

ସେତେବେଳେ ଆମଘରେ ସମସ୍ତେ ଭାବୁଥିଲେ ଯେଝିଅଟା ପାଗିଳୀ ହୋଇଗଲାଣି । ଧ୍ୟାନ, ପ୍ରାଣାୟମ, ପୂଜା, ଗୀତାପାଠ ଆଦି ଚାଲିଥାଏ । ସେତିକିବେଳେ ଶୁଣାଗଲା ମହାତ୍ମାଜୀ ପ୍ରଭୃତି ଖଲାସ ହେଲେ । କରାଚୀ କଂଗ୍ରେସକୁ ସବୁ ନେତାମାନେ ଗଲେ । କଂଗ୍ରେସର ଆଗାମୀ ଅଧିବେଶନ ଓଡ଼ିଶାରେ କରିବା ପାଇଁ ଡକାଗଲା । ତାହାପୂର୍ବରୁ ଅନ୍ୟାନ୍ୟ ପ୍ରଦେଶରେ ଏକାଧିକଥର କଂଗ୍ରେସ ଅଧିବେଶନ ହୋଇ ସାରିଥାଏ । ଓଡ଼ିଶା ଭାଗ୍ୟରେ ଏହା ପ୍ରଥମ । ନେତୃବର୍ଗ ବିପୁଳ ଉତ୍ସାହରେ ଲାଗି ପଡ଼ିଲେ । ଅଭ୍ୟର୍ଥନାସମିତିର ସଭ୍ୟମାନେ ପଚିଶିଟଙ୍କିଆ ସଭ୍ୟ ସଂଗ୍ରହ କରିବାକୁ ଆମ ଗାଁକୁ ବି ଆସି ବୁଲିଗଲେ । ନାଲାଦା' ସେତେବେଳକୁ ଗାଁରେ ଆସି ତନ୍ତ ପକାଇ ଲୁଗାବୁଣା, ସୂତାକଟା, ଉନ୍ନତ ଧରଣର ଚାଷ, ବଗିଚା ତିଆରି, ପୌଢ଼ ଶିକ୍ଷା ପାଇଁ ନୈଶ ବିଦ୍ୟାଳୟଆଦି ରଚନାତ୍ମକ କାମ ଦଳେ ଉତ୍ସାହୀ ପିଲାଙ୍କୁ ଧରି ଆରମ୍ଭ କରିଦେଇଥିଲେ । ତାଙ୍କଘର ଦାଣ୍ଡରେ ଗୋଟିଏ ଘର ତିଆରି ହୋଇ କର୍ମକେନ୍ଦ୍ର ପ୍ରତିଷ୍ଠା କରାଗଲା । ତାର ନାଁ ରଖାଗଲା 'ଶ୍ରମ ସଂସ୍ଥାନ ।'

ସେଠାରେ ଯେଉଁମାନେ କାମ କରୁଥାନ୍ତି ସେମାନେ ଉତ୍ପନ୍ନ ଲୁଗା, ଗାମୁଛା ଇତ୍ୟାଦି ପାରିଶ୍ରମିକ ବାବଦକୁ ପାଆନ୍ତି । ଗାଁରେ କେତେକଙ୍କ ଜମିରେ ପରିବାଚାଷର ବଗିଚାଟିଏ କରି ପନିପରିବା ଚାଷ ଖୁବ୍ ଜୋର୍‌ରେ କରୁଥାନ୍ତି । ସେ ସବୁରୁ କର୍ମୀମାନେ ନିଜ ଘରର ଖର୍ଚ୍ଚ ତୁଳାନ୍ତି । ବଗିଚାର ନାମ ଦିଆଯାଇଥାଏ ଘରର ଇଷ୍ଟ ଦେବତାଙ୍କ ନାମ ଅନୁସାରେ 'ଲାଲ ବାଗ୍' । ତାଙ୍କ ସହିତ ମେଦିନୀପୁରର ଜଣେ କର୍ମୀ ଆସି ଯୋଗ ଦେଲେ । ତାଙ୍କ ନାଁ, ରାମନାରାୟଣ ପଣ୍ଡା ।

ଆଗରୁ ଗାଁ'ର ମୂଲିଆମାନେ କାମକୁ ମନଇଚ୍ଛା ଯେତେବେଳେ ପାରି ସେତେବେଳେ ଯାଆନ୍ତି । ଚାଷୀମାନେ ମଧ୍ୟ ସେମାନଙ୍କୁ ମନଇଚ୍ଛା ଖଟାନ୍ତି । ଉଭୟେ ପରସ୍ପରକୁ ଠକେଇବା ଚେଷ୍ଟାରେ ଥାନ୍ତି । ସେ କିନ୍ତୁ ଗୋଟାଏ ବଡ଼ ପିଟା ଘଣ୍ଟା ରଖିଦେଲେ । କର୍ମୀମାନେ ନିର୍ଦ୍ଦିଷ୍ଟ ସମୟରେ ଘଣ୍ଟାପିଟନ୍ତି । ଭୋର ଚାରିଟାରେ, ସକାଳ ସାତଟାରେ କାମକୁ ଯିବାବେଳେ, ଦିନବାରଟାବେଳେ କାମ ବନ୍ଦବେଳେ ପୁଣି ଉପରବେଳା ଦୁଇଟା, ପାଞ୍ଚଟାରେ ଘଣ୍ଟା ବାଜେ । ଥରେ ମୂଲିଆ କି ଚାଷୀ କିଏ କେଜାଣି ସେ ଘଣ୍ଟାକୁ ରାତିରେ ନେଇ ପଳାଇଗଲେ । ପରସ୍ପରକୁ ଠକାଇବା ସେତେବେଳକୁ ଏତେ ବେଶୀ ହୋଇଗଲାଣି ଯେ କିଏ ବା କାହାକୁ ସହ୍ୟ କରନ୍ତେ ! ସେତେବେଳେ ସାମନ୍ତବାଦୀରୀତି ଚାଲିଥିଲା । ବ୍ରାହ୍ମଣ, କରଣ, ଖଣ୍ଡାୟତମାନେ ନିଜକୁ ଚିରଦିନ ଶାସକ ଓ ସାମନ୍ତ ଆସନରେ ପୁରୁଷାନୁକ୍ରମେ ରଖି ଅନ୍ୟମାନଙ୍କୁ ସେବକ କରି ରଖିଥିବେ ବୋଲି ଧରି ନେଉଥିଲେ । କେତେ ଜାଗାରେ ଗୋପାଳମାନେ ଆଉ ସବାରୀ କାନ୍ଧେଇବାକୁ ଜାତିଆଣ ଭାବେ ନିଷେଧ କରିବାରୁ ଦାରୁଣ ସଂଘର୍ଷ ଘଟି ଲୋକେ ମୃତାହତ ହେବା ସଙ୍ଗେ ସଙ୍ଗେ ମାଲିମକଦ୍ଦମା ଆଦି ମଧ୍ୟ ଚାଲିଥାଏ । ଲୋକଙ୍କମନରେ ବ୍ୟକ୍ତିସ୍ୱାଧୀନତାର ନବଜାଗରଣ ବି ଅଙ୍କୁରିତ ହୋଇଥାଏ । ଏତିକିବେଳେ ହିଁ ପୁରୀରେ କଂଗ୍ରେସ ଅଧିବେଶନ ହେବାର ଆୟୋଜନ ଚାଲିଥିଲା । କଂଗ୍ରେସ ଅଧିବେଶନ ପାଇଁ ଦଳଦଳ ସ୍ୱେଚ୍ଛାସେବକମାନଙ୍କୁ ତାଲିମ ଦିଆଯିବାର ବ୍ୟବସ୍ଥା ହେଲା । ଅଲଗା ଅଲଗା ଶିବିରରେ ରହି ତରୁଣ ଏବଂ ତରୁଣୀ ତଥା ଝିଅବୋହୂମାନେ ତାଲିମ ନେଉଥିଲେ ।

## (୪)

ପୁରୀର ତାଲିମ ଶିବିରକୁ ଆମ ଗାଁ'ର କେତେଜଣ ମହିଳା ସ୍ୱେଚ୍ଛାସେବିକା ଯିବାକୁ ବାହାରିଲେ । ସେଥିରେ ମୋ ନାଁ ତ ପ୍ରଥମେ ଆସିବାକଥା । ମୁଁ ଓ ମୋର ଜଣେ ଦୂରସମ୍ପର୍କୀୟା ପିଉସୀ, ଚିତ୍ରକଳା ଦେଈ ଯିବାକୁ ମନେ ମନେ ପ୍ରସ୍ତୁତ ହେଲୁ । ସେହି ପିଉସୀଙ୍କ ବାପା ଜଣେ ନିର୍ଭୀକ ସ୍ୱାଧୀନ ଚେତା ଶିକ୍ଷିତ ବ୍ୟକ୍ତି ଥିଲେ । ସେ କନିକା ପ୍ରଜାଆନ୍ଦୋଳନବେଳେ ଆନ୍ଦୋଳନରେ ଭାଗ ନେଇଥିବାରୁ ଚାକିରିରୁ ତଡ଼ାଖାଇ ଆସିଥିଲେ ଏବଂ ଗାଁରେ ହୋମିଓପ୍ୟାଥିକ ଚିକିତ୍ସା କରୁଥିଲେ । ଗରିବଲୋକମାନଙ୍କୁ ସେ ମାଗଣାରେ ଔଷଧ ବାଣ୍ଟୁଥିଲେ । ତାଙ୍କ ଘରକୁ ଇଂରାଜୀଖବରକାଗଜ 'ଅମୃତ ବଜାର ପତ୍ରିକା' ଓ ଆଉ ଗୋଟାଏ କ'ଣ ଆସୁଥାଏ । ତାଙ୍କର ଝିଅମାନେ 'ମଧୁସୂଦନ ଗ୍ରନ୍ଥାବଳୀ' ଓ 'ରାଧାନାଥ ଗ୍ରନ୍ଥାବଳୀ' ପଢୁଥିବାର ଦେଖି ପିଲାଦିନେ ତାଙ୍କ ପାଖରେ ବସି ମୁଁ ପଢୁଥାଏ । ତାଙ୍କ ନାଁ, ଯୁଗଳ କିଶୋର ଦାସ । ଆମେ ତାଙ୍କୁ ଯୁଗଳ ସା'ନ୍ତେ ବୋଲି ଡାକୁ । ଆଗରୁ ଗାଁରେ ସାପ କାମୁଡ଼ିଲେ

ଗୁଣିଆ ଆସି ମନ୍ତ୍ର ପଢ଼ି, ଝାଡ଼ି ଫୁଙ୍କି ଦେଉଥିଲା । କେତେଜଣ ଭଲ ହେଉଥିଲେ କହି ପାରିବି ନାହିଁ କିନ୍ତୁ ପ୍ରଥମେ ଆସି ସିଏ ଡାକ୍ତରୀ ଔଷଧ ଇନ୍‌ଜେକସିନ ପ୍ରୟୋଗ କଲେ ସାପକାମୁଡ଼ା ପାଇଁ । ଆମ ପିଲାବେଳେ ମୋ ଦଳଭାଇକୁ ଗୋଖର ସାପ କାମୁଡ଼ି ଦେଇଥିଲା । ସେ ଆମ୍ବତୋଟା ଭିତରେ ଦୌଡୁଥିବାବେଳେ ସାପ ଉପରେ ଚଢ଼ି ଯାଇଥିଲା । ଯୁଗଳ ସା'ନ୍ତେ ଗୁଣିଆମାନଙ୍କୁ ବାରଣ କରି ତାଙ୍କୁ ଛୁଆଁଇ ନ ଦେଇ ଇନ୍‌ଜେକସିନରେ ତାକୁ ଭଲ କରି ଦେଇଥିଲେ ।

ସେହି ଦିନ ଠାରୁ ମୋ ବୋଉ ତାଙ୍କୁ ଭାରି ଭକ୍ତି କରୁଥିଲା ତା' ଜୀବଦ୍ଦଶାରେ । ସାପ କାମୁଡ଼ାକୁ ଡାକ୍ତରୀ ଔଷଧଦ୍ୱାରା ଯେ ଭଲ କରାଯାଇପାରେ ଏ ଧାରଣା ଲୋକମାନଙ୍କ ମନରେ ସୃଷ୍ଟି ହୋଇଥିଲା । ଗାଁକୁ ପ୍ରଥମେ ପମ୍ପଦିଆ ଷ୍ଟୋଭ୍ ମଧ ସେ ଆଣିଥିଲେ । ଜଳଚୁଲି ଦେଖିବାକୁ କେଡ଼େ ଆଗ୍ରହରେ ଆମେସବୁ ତାଙ୍କ ଘରକୁ ଯାଉଥିଲୁ । ଚାକିରି ଯିବା ପରେ ଅର୍ଥାଭାବରୁ ତାଙ୍କ ପରିବାର ବହୁତ ହରରାଣ ହେଉଥିଲେ । ବନ୍ୟାରେ ତାଙ୍କ ଘର ମଧ ନିଶ୍ଚିହ୍ନ ହୋଇ ଯାଇଥିଲା । ବାଡ଼ିରେ କୁଡ଼ିଆ ପରି ଚାଳିଆ ଖଣ୍ଡେ କରି ପିଲାଛୁଆଙ୍କୁ ଧରି ରହୁଥାନ୍ତି । ଥରେ ଥରେ ଦୁଇ ତିନି ଦିନ ଉପାସରେ ବି ନିଜେ ଓ ତାଙ୍କ ପରିବାର ରହୁଥାନ୍ତି । ତଥାପି କାହାରି ପାଖରେ କ୍ଷମାଭିକ୍ଷା କରି କେଉଁଠି ଚାକିରି କରିବାକୁ ସେ ହାତ ପତାଇନଥିଲେ । ଅଭାବର ତାଡ଼ନାରେ ପରିବାରଟିକୁ ଅତ୍ୟନ୍ତ ନିଃସହାୟ ଭାବରେ ଛାଡ଼ି ଚିକିତ୍ସା ଓ ପଥ୍ୟ ଅଭାବରେ ମୋ ବୋଉ ମରିଥିବା ବର୍ଷ ସେ ମଧ ମରି ଯାଇଥିଲେ । ତାଙ୍କର ତିନିଝିଅ ଓ ତିନିପୁଅ କମ୍ ହୀନସ୍ତା ହେଉ ନଥିଲେ । ମୋର ସେ ପିଉସୀ ଜଣକ ତାଙ୍କରିଝିଅ । ସେ ଆମ କୁମାରୀ ସଂସଦର ସଭ୍ୟା ଥିଲେ ଓ ମୋତେ ଭାରି ସ୍ନେହ କରୁଥିଲେ । ଗାଁ ଲୋକମାନେ ତାଙ୍କୁ କୌଣସି ସାହାଯ୍ୟ କରିବା ତ ଦୂରର କଥା ଓଲଟି ଘୃଣା କରୁଥିଲେ । କିନ୍ତୁ ମୁଁ ତାଙ୍କ ଘରକୁ ଯାଇ ସେମାନଙ୍କ ସାଙ୍ଗରେ ମିଳାମିଶା କରୁଥାଏ । ପରେ ଝିଅମାନେ ବାହାହେବାରୁ ଜ୍ୱାଇଁଙ୍କ ସାହାଯ୍ୟରେ ସେମାନେ ଟିକିଏ ଭଲରେ ଚଳିଲେ । ସେଇ ପିଉସୀ ତାଲିମ ଶିବିରରେ ଯୋଗ ଦେବାକୁ ବାହାରିବାରୁ ତାଙ୍କ ମା ଓ ମୁରବିମାନଙ୍କ ବଡ଼ ତାଗିଦାରେ ସେ ଦବିଗଲେ । ମୁଁ ବାହାରିଲି ।

ମୋ ବାପା ମୋର ଢଙ୍ଗଢ଼ାଙ୍ଗ ଦେଖି ବଡ଼ ଚିନ୍ତିତ ଥିଲେ । ମୋତେ ବହୁତ ବୁଝାଇଲେ । ତାଙ୍କ ବୁଝାଇବା କିନ୍ତୁ ମୋତେ ବିଶେଷ ଭାବରେ ପ୍ରଭାବିତ କରୁନଥିଲା । ଅନେକ ମୋର ଏ ଲେଖା ପଢ଼ି ମୋତେ କହୁଛନ୍ତି ଓ ଅନ୍ୟମାନେ ମଧ ଭାବୁଥିବେ ଯେ ମୁଁ ନିଜ ଆତ୍ମଜୀବନୀ ଲେଖୁଛି ବୋଲି । କିନ୍ତୁ ମୁଁ ମୋ ଜୀବନର ସ୍ମୃତି ଓ ତହିଁରେ ଗାନ୍ଧିଜୀଙ୍କ ସଂସ୍ପର୍ଶର ପ୍ରଭାବ ଲେଖିବାକୁ ବସିଛି । ସେଥିପାଇଁ ସେତେବେଳର ଗାଁ ଗହଳିର ପାରିପାର୍ଶ୍ୱିକ ଅବସ୍ଥାର ଚିତ୍ର ଛାଏଁ ଛାଏଁ ଆସି ଯାଉଛି । ମୁଁ ତ ଆଗରୁ କହିଛି ଯେ ଜାତିର ପିତା ବା ଜଗତର ମହାମାନବଙ୍କର ବାଣୀର ତାତ୍ତ୍ୱିକ ଆଲୋଚନା କରିବା ମୋ ଦ୍ୱାରା ହେବ ନାହିଁ । ତାହା କରିବାକୁ ବହୁପ୍ରବୀଣ

ଜ୍ଞାନୀ ବ୍ୟକ୍ତି ବିଶେଷ ଅଛନ୍ତି । ତେଣୁ ତାଙ୍କ ଭଳି ପୁଣ୍ୟାତ୍ମାଙ୍କ ସଂସ୍ପର୍ଶରେ ଆସି, ପ୍ରଭାବ ଦ୍ୱାରା ଆକୃଷ୍ଟ ହୋଇ ମୋ ଭଳି ଜଣେ ଗାଁର ଝିଅ କିପରି ଉପକୃତ ହୋଇଛି ସେଇ ଅଙ୍ଗେ ଲିଭାଇବାର କଥା କହିବା ବେଳେ ନିଜ ଗାଁର ଛବି ଆସିବା ସ୍ୱାଭାବିକ୍ । ଆକାଶରେ ପ୍ରଭାକର ସୂର୍ଯ୍ୟଙ୍କର ଉଦୟ ହେଲେ ପୃଥିବୀରୁ ଅନ୍ଧକାର ଦୂର ହୋଇଯାଏ । ସୂର୍ଯ୍ୟଙ୍କର ଉଜ୍ଜ୍ୱଳ ଦୀପ୍ତି ବାଲିକଣାରେ ମିଶିଥିବା ଅଭ୍ରକଣା ଓ କାଚଗୁଣ୍ଡ ଉପରେ ମଧ ପ୍ରତିଫଳିତ ହୁଏ । ସେହିପରି ବିଦେଶର ଜନସମାଜ ଓ ଅନେକ ପ୍ରତିଭାଶାଳୀ ବ୍ୟକ୍ତିଙ୍କ ଉପରେ ଗାନ୍ଧିଜୀଙ୍କ ଜୀବନାଦର୍ଶର ପ୍ରଭାବ ତ ଅତିସ୍ୱଚ୍ଛ ଓ ଉଜ୍ଜ୍ୱଳ ଭାବରେ ପ୍ରତିଫଳିତ ହୋଇଛି । ବହୁ ବିଳାସୀ ତଥା ପ୍ରତିଭାବାନ୍ ବ୍ୟକ୍ତି ତ୍ୟାଗୀରେ ପରିଣତ ହୋଇ ଜୀବନର ଧାରା ବଦଳାଇ ଦେଇଛନ୍ତି । ମାତ୍ର ମୋ ପରି ଜଣେ ନଗଣ୍ୟ ପଲ୍ଲୀ ବାଳିକା ଜୀବନରେ ତାହାର ପ୍ରଭାବ କିପରି କାର୍ଯ୍ୟ କରିଛି ତାହାର ଆଭାସ ମୋର ଏ ଲେଖାର ବିଷୟବସ୍ତୁ ।

ମୁଁ ନିଜେ ତ ପୁରୀ ଯିବା ପାଇଁ ମନେ ମନେ ପ୍ରସ୍ତୁତ ହେଲି କିନ୍ତୁ ବାପା ମୋତେ ନିବର୍ତ୍ତାଇବା ପାଇଁ ନାନା ଉପାୟ ପାଞ୍ଚିଲେ । ଗାଁର ଶ୍ରମ ସଂସ୍ଥାନ ଅନୁଷ୍ଠାନର ପ୍ରତିଷ୍ଠାତା ଲାଲ ବିହାରୀ ପଟ୍ଟନାୟକଙ୍କ ସଦ୍ ପରାମର୍ଶ ଉପରେ ମୁଁ ସମ୍ପୂର୍ଣ୍ଣ ନିର୍ଭର କରୁଥାଏ । ରଘୁନାଥ ଦାସଙ୍କ ପ୍ରଦତ୍ତ ଶିକ୍ଷା ମୋର ବାଲ୍ୟ ଜୀବନର ଉପରେ ପ୍ରଭାବ ପକାଇଥିଲା । ବାପା ସେଇମାନଙ୍କୁ ଡାକି ମୋତେ ବୁଝାଇ ସୁଝାଇ ସେଥିରୁ ନିବର୍ତ୍ତାଇବାକୁ କହିଲେ । ଏପରିକି ମୋ ପାଇଁ ବିଭାଘର ଯୋଗାଡ଼ କରିବାକୁ ସେମାନଙ୍କୁ କହିଲେ । ଏହାଦ୍ୱାରା ମୁଁ ମୋ ମନଇଚ୍ଛା ଦେଶକାମ କରିପାରିବି ନାହିଁ ବୋଲି ସେ ଧାରଣାକଲେ । ବୋଉ ମଲାପର ଠାରୁ ତ ମୁଁ ସଂସାର ବନ୍ଧନ ଅତି ଅସହ୍ୟମନେ କରୁଥିଲି । ମୁଁ ଆଦୌ ସଂସାରୀ ହେବି ନାହିଁ ବୋଲି ସ୍ଥିର କରିଥିଲି । ଆମ ଦେଶ ଓ ସମାଜରେ ଅବିବାହିତା ଝିଅ ପକ୍ଷରେ ଘରୁ ବାହାରି ବାହାରେ କାମ କରିବା କିପରି କଷ୍ଟକର ସେତେବେଳେ ମୁଁ ଜାଣି ନଥିଲି । ଦେଶକାମ କରିବାକୁ ନିଷ୍ପତ୍ତି ନେଇ ସାରିଥିବାବେଳେ ସେଥିରେ ବା ମୁଁ କେମିତି ରାଜି ହୋଇଥାନ୍ତି ? ସେହି ପ୍ରସ୍ତାବରେ ହିଁ ମୋତେ ବେଶୀ ବିଦ୍ରୋହୀ ହେବାକୁ ହେଲା ।

ପୁରୀ ଯିବା ତାରିଖ ପାଖେଇ ଆସିଲା । ମୁଁ ଯିବି, ମନରେ ବିରାଟ କଳ୍ପନା । ଏପଟେ ପରିବାରର ଆକଟ ବିରାଟ ପ୍ରତିବନ୍ଧକ । ଗୋଟିଏ କଥାରେ ମନରେ ମୋର ଗ୍ଲାନି ରହିଲା । ସେଇଥିପାଇଁ ମୁଁ ନିଜକୁ ଅପରାଧୀ ବୋଲି ଦାୟୀକରେ । ମୋ ବୁଢ଼ୀମା' ସେତେବେଳକୁ ଅଥର୍ବ । ତାଙ୍କ ବୟସବେଳେ ସେ କରିଥିବା ଅୟସ କଥା ଅନ୍ୟ ଯା'ମାନେ ତାଙ୍କର କହନ୍ତି । ବୋଉ ମଲାପରେ ଆମ ଘରର ଅବସ୍ଥା, ବନ୍ୟା ଦାଉ ଯୋଗୁଁ ଆର୍ଥିକ ଦୁର୍ଦ୍ଦଶା ଓ ବାର୍ଦ୍ଧକ୍ୟରେ, ସେବା ଅଭାବରେ ସେ ବିଚାରୀ ବଡ଼ ବ୍ୟସ୍ତରେ ଆମକୁ ବଢ଼ାଇଥିଲେ । ତାର ଜୀବନାବସାନ କାଳ । ସେ ମୃତ୍ୟୁଶଯ୍ୟାରେ । ମୋ ବାପାଙ୍କ ନିଜ ଭାଇ (ବାପା ଆଉଜଣଙ୍କ ଘରକୁ

ପୋଷ୍ୟପୁତ୍ର ହୋଇ ଆସିଥିଲେ) ଅଭାବ ଅସୁବିଧାରେ ଥିବାବେଳେ ଯାଇ ଖଡ୍ଗେଇକଳାରେ ପ୍ରାଥମିକ ସ୍କୁଲର ଶିକ୍ଷକତା କରୁଥିଲେ । ଖୁଡ଼ୀଙ୍କୁ ମଧ୍ୟ ନେଇ ଦୀର୍ଘଦିନଧରି ସେଆଡ଼େ ରହୁଥିଲେ । ସେ ଗାଁକୁ ଆସିଥିଲେ । ଆମ ଘରେ ରହି ବୁଢ଼ୀମା ଓ ପିଲାଙ୍କ ଯତ୍ନ ନେବାକୁ କହି ବାପା ସେମାନଙ୍କୁ ଅଟକାଇଲେ । ମା'ର ସେବା ମୃତ୍ୟୁଶଯ୍ୟାରେ ସେଇ ଖୁଡ଼ୀ କରୁଥିଲେ । ମୁଁ ବୁଢ଼ୀମା'ର କୌଣସି ସେବା ବିଶେଷଭାବରେ କରିପାରି ନାହିଁ । ମନରେ ଗ୍ଲାନି ରହି ଯାଇଛି ସେଇଥିପାଇଁ । ମା' ଚାଲି ଗଲା ସବୁକଷ୍ଟରୁ ପାରି ହୋଇ । ତାଲିମ ପାଇଁ ପ୍ରାର୍ଥୀନୀମାନେ ଯେଉଁ ତାରିଖରେ ଗାଁରୁ ପୁରୀ ଅଭିମୁଖେ ଯାତ୍ରା କରିବା କଥା ସେଦିନ ଥିଲା ମୋ ବୁଢ଼ୀମାର ଦଶଦିନ । କିନ୍ତୁ ମୋତେ ଯିବାକୁ ହିଁ ହେବ । ମୁଁ ଭୋରରୁ ଗାଧୋଇ ଆସି ବାପା ଦାଣ୍ଡ ପିଣ୍ଡାରେ ବସି ଦାନ୍ତଘସୁଥିବାବେଳେ ତାଙ୍କୁ ଜୁହାର ହୋଇ ପୁରୀ ଯାଉଛି ବୋଲି କହିଲି ।

## (୫)

ମୁଁ ସେଦିନ ସକାଳେ ଗାଧୋଇ ଓଦାଲୁଗା ପିନ୍ଧି ତୁଳସୀ ଚଉରାକୁ ଜୁହାର ହେଲି । ତା'ପରେ ବାପାଙ୍କୁ ଜୁହାର ହୋଇ ଯେତେବେଳେ 'ପୁରୀ ଯାଉଛି' ବୋଲି କହିଲି ବାପା ହଠାତ୍ କିଛି ନ କହି, ମୋତେ ପାଖରେ ଥିବା ଛୋଟ ଘରଭିତରକୁ ପେଲି ଦେଇ ବାହାରପଟୁ କବାଟ ଲଗାଇ ଦେଲେ । ସେତେବେଳକୁ ମୋ ବୁଢ଼ୀମା'ର ଦଶଦିନର ଅଣସୁଦିଆ । ହାଣ୍ଡିକାଢ଼ି ଦେଇ ଖୁଡ଼ି କାନ୍ଦି କାନ୍ଦି ଯାଉଥିଲା । ମୁଁ ଓଦାଲୁଗା ପିନ୍ଧି ସେଇ ଘର ଭିତରେ ରହିଲି । ମା'ର ଏଗାରଦିନର ବ୍ରାହ୍ମଣଖିଆ ଗୋଳମାଳ ମୁଁ ସେହି ଘର ଭିତରୁ ଶୁଣିବାକୁ ପାଉଥାଏ । କିଏ ଜଣେ ମୁରବି ଶ୍ରେଣୀର ଲୋକ ବାପାଙ୍କୁ କହିବାର ଶୁଣିଛି, 'ଗୋଦାବରୀକୁ କାହିଁକି ବନ୍ଦ କରି ରଖିଛ, ଖୋଲି ଦିଅ ।' ବାପା ଜବାବ ଦେଲେ, 'ତାକୁ ଖୋଲି ଦେଲେ ସେ ପୁଣି ପୁରୀ ଯିବାକୁ କହିବ, ମୁଁ ତାକୁ ଜମା ଛାଡ଼ିବି ନାହିଁ ।'

ରାତି ପ୍ରାୟ ବାରଟାବେଳେ ସବୁକାମ ସାରି ଖୁଡ଼ୀ ଓ ଜାନୀଖୁଡ଼ୀ ମୋ ପାଖକୁ ଆସିଲେ । ଓଦା ଲୁଗା ତ ସେତେବେଳକୁ ଶୁଖି ଯାଇଥିଲା । ମନେ ଅଛି, ଜାନୀଖୁଡ଼ି ମୋବେକଧରି ପାଟିରେ ଗୋଟିଏ ରସଗୋଲା ଜୋର୍ କରି ମାଡ଼ିଦେଲା । ତୁକେ ଦି' ଢ଼ୋକ ପାଣି ବି ପିଆଇଦେଲା । ତା'ପରେ କବାଟ ବନ୍ଦ । ପୁଣି ରାତି ହେବାମାତ୍ରକେ ଖୋଲିଦିଅନ୍ତି କାରଣ ରାତିରେ ତ କୁଆଡ଼େ ଯାଇ ପାରିବି ନାହିଁ । ଦିନେ ସଂଧ୍ୟାବେଳେ ମଧୁବୋଉ ବୋଲି ମୋତେ ସମର୍ଥନ କରୁଥିବା ଜଣେ ମହିଳା ମୋତେ କହିଲେ, 'ଏମିତି ନଖାଇ ନ ପିଇ ଘରେ ବନ୍ଦ ହୋଇ କେତେଦିନ ଥିବୁ ମୋ ସାଙ୍ଗରେ ଚାଲ ଲୁଚିକି ଯିବା । ତୋତେ ପୁରୀରେ ଛାଡ଼ି ଆସିବି ।' ସେତେବେଳେ ଆମଗାଁର ଲାଲ ବିହାରୀ ପଟ୍ଟନାୟକ (ନାଲାଦା)ଙ୍କ ସ୍ତ୍ରୀ

ବିଷ୍ଣୁପ୍ରିୟାଦେବୀ ସେବାଦଳ ତାଲିମ ଶିବିରରେ ଯୋଗଦେବାକୁ ପୁରୀ ଚାଲିଗଲେଣି । ମଧୁବୋଉର କଥା ଶୁଣି ମୁଁ କହିଲି, 'ନ ଯିବି ପଛକେ ନାହିଁ ଲୁଚିକି କେବେ ହେଲେ ଯିବି ନାହିଁ ।'

ଦୁଇଦିନ ଘରେ ମୋତେ ବନ୍ଦ କରିବା ପରେ ଆଉ ମୋତେ ଘର ଭିତରେ ବନ୍ଦ କରି ରଖିଲେ ନାହିଁ । ମୁଁ ସ୍ୱାଭାବିକ୍ ଭାବରେ ଖିଆ ପିଆ କରି ଚଳାଇଲି ଓ ବାପାଙ୍କ ପୂଜାପୂଜିରେ ଯୋଗାଡ଼ କରି ଦେଲି । ପାନ ଭାଙ୍ଗିଦେଲି । ଖୁଡ଼ୀ ତ ଭାଇ ବୋହୂ ତେଣୁ ବାପାଙ୍କ ଆଗକୁ ଯାଏ ନାହିଁ । ବଡ଼ ଭଉଣୀର ବାହାଘର ଦୁଇବର୍ଷ ଆଗରୁ ସରିଯାଇଥାଏ । ଭାଉ ଦୁଇଟି ସାନ ପିଲା । ପୁଣି ଦିନେ ଦିନଦଶଟାବେଳେ ସରିକି ହେବ ବାପା ବସିଥିଲେ ଦାଣ୍ଡରେ । ମୁଁ ତାଙ୍କୁ ନେଇ ପାନ ଦେଲି । ଦଣ୍ଡବତ ହୋଇ 'ଯାଉଛି' ବୋଲି କହି ଦାଣ୍ଡବାଟେ ବନ୍ଧ ଉପରକୁ ବାହାରିଗଲି । ନାଳାଦା' ଓ ତାଙ୍କ ଶ୍ରମ ସଂସ୍ଥାନର କର୍ମୀ କେତେଜଣ ବନ୍ଧ ଉପରେ ଥିଲେ । ମୁଁ ଯାଇ ସେଠାରେ ପହଞ୍ଚିଗଲି । ପଛରୁ ବାପା ପାଟି କରି ଆସି ସେଠାରେ ପହଞ୍ଚିଲେ । ତାଙ୍କ ପଛରେ ଠେଙ୍ଗାଧରି ଦଶ ପନ୍ଦରଜଣ ଲୋକ । ମୋତେ ମାରିବାକୁ ଆସିଛନ୍ତି ଭାବି ନାଳାଦା' ମୋ ହାତ ଧରି ନେଲେ । ବାପା ମୋତେ ଗୋଟିଏ ଚାପୁଡ଼ା ମାରି ନାଳାଦା'ଙ୍କ ଉପରେ ମାଡ଼ ବସାଇବାକୁ ଲାଗିଲେ । ଏଣେ ପୁଣି ମୋର ଗୋଟାଏ ହାତ ଧରି ଟାଣୁଥାନ୍ତି । ନାଳାଦା' ବାପାଙ୍କୁ ବୁଝାଉଥାନ୍ତି ତେବେ ମାଡ଼କୁ ପିଠି ପତାଇ ଦେଉଥାନ୍ତି । ଅନ୍ୟକର୍ମୀମାନଙ୍କୁ ବି ବାପା ମାରି ଚାଲିଥାନ୍ତି । ବନ୍ଧ ଉପରେ ଗୋଟିଏ ଖଣ୍ଡ ଯୁଦ୍ଧ ଚାଲିଥାଏ । ଯୁଦ୍ଧଟା କିନ୍ତୁ ଏକତରଫା ଚାଲିଥାଏ । ଅନ୍ୟପକ୍ଷ ସଂପୂର୍ଣ୍ଣ ଅହିଂସା ଆଚରଣରେ ବ୍ରତୀ । ମଝିରେ ଥାଏ ମୁଁ । ବାପାସିନା କେଇଜଣ ପ୍ରଜାଙ୍କୁ ଧରି ଆକ୍ରମଣ କରିବାକୁ ବାହାରି ପଡ଼ିଥିଲେ କିନ୍ତୁ ସାମ୍ନାରେ ତାଙ୍କର ପଟ୍ଟନାୟକ ଘର ବିରାଟ ପରିବାରର ଭାଇମାନେ ଓ ତାଙ୍କର ଲୋକମାନେ । ଗାଁର ସବୁଲୋକ ଜମା ହୋଇଗଲେ । ନାଳାଦା' ମାଡ଼ ଖାଉଥାନ୍ତି କିନ୍ତୁ ତାଙ୍କର ଅନ୍ୟଭାଇମାନଙ୍କୁ ଓ କର୍ମୀମାନଙ୍କୁ ଅନୁରୋଧ କରୁଥାନ୍ତି ମୋ ବାପା (ବାଞ୍ଛାନିଧି ବାବୁ)ଙ୍କ ଦେହରେ ହାତ ନ ଦେବାକୁ ।

ସେତେବେଳକୁ ଗାଁର ପିଲା ମାଇପେ ପର୍ଯ୍ୟନ୍ତ ବନ୍ଧତଳେ ଜମିଗଲେଣି । ମୋ ମନର ପରିସ୍ଥିତି କ'ଣ ମୁଁ ନିଜେ ବି କିଛି ବୁଝି ପାରୁନଥାଏ । ସବୁ ସ୍ତ୍ରୀ ଲୋକମାନେ ମୋତେ ଗାଳି ଦେଉଥାନ୍ତି । ହଠାତ୍ ସୁନ୍ଦରୀ ବୋଉ ମା' ଗଣ୍ଡଗୋଳ ଭିତରକୁ ପଶି ଆସିଲେ । ସେ ଆମ ଗାଁର ଜଣେ ଆଗୁଆ ମହିଳା । ତାଙ୍କୁ ସମସ୍ତେ ଖୁବ୍ ଖାତିର କରୁଥିଲେ । ସେ ଟୁଟ୍କା ଔଷଧ ଦେଇ ପିଲାଙ୍କ ରୋଗର ଚିକିତ୍ସା କରିଦିଅନ୍ତି । ଆଖିରୋଗୀମାନେ ମଧ୍ୟ ତାଙ୍କ ଠାରୁ ଔଷଧ ନିଅନ୍ତି । ସେ ରିଟାୟାର୍ଡ଼ ଇଞ୍ଜିନିୟର ଇନ୍‌ଚିଫ୍ ବୀରେନ୍ଦ୍ର ପଟ୍ଟନାୟକଙ୍କର ସାଆନ୍ତ ମା' । ସୁନ୍ଦରୀ ବୋଉ ମା' ଭିତରକୁ ପଶି ଆସି ବାପାଙ୍କ ହାତରୁ ଓ ନାଳାଦା'ଙ୍କ ହାତରୁ ମୋ ହାତ

ଛଡ଼ାଇ ନେଲେ । ମୋତେ ଟାଣି ଟାଣି ଘରକୁ ନେଇଗଲେ । ବାପା କହିଲେ, 'ଖୁଡ଼ୀ, ଗୋଦୀ (ମୋ ଡ଼ାକ ନାମ) ତୋ ଜିମା ରହିଲା । ଛାଡ଼ିଲେ, ତୋଠୁଁ ନେବି' । ସେଦିନ ରାତି ପର୍ଯ୍ୟନ୍ତ ସୁନ୍ଦରୀ ବୋଉ ମା'ଙ୍କ ଘରେଥିଲି । ଏତେ ଲୋକଙ୍କ ମାଡ଼ର କାରଣ ମୁଁ' ଇ ହେଲି ଏକଥା ଭାବି ନିଜକୁ ଧିକ୍କାର କଲି । ନାଲାଦା' ନିଜେ ମାଡ଼ଖାଇ ମଧ୍ୟ ବାପାଙ୍କ ହାତ ଦରଜ ହୋଇଥିବ ବୋଲି ହାତରେ ଲଗାଇବା ପାଇଁ ଔଷଧ ପଠାଇ ଦେଇଥିଲେ । ମୋ ପାଇଁ ମଧ୍ୟ ଔଷଧ ପଠାଇ ଦେଇଥିଲେ । ରାତିରେ ଖୁଡ଼ୀ ଆସି ମୋତେ ପୁଣି ଘରକୁ ନେଇଗଲା ।

ଗାଁ ଯାକର ଘୃଣା ଓ ଭର୍ତ୍ସନା ମୋ ଉପରେ କୁହୁଡ଼ି ପରି ମାଡ଼ିଗଲା । ଗାଁର ଏହା ସବୁଠାରୁ ବଡ଼ ଅଶୋଭନୀୟ ଘଟଣା । ସମସ୍ତଙ୍କର ଭର୍ତ୍ସନା, ଛିଛାକର କଥା ଏବଂ ଘୃଣା ମୋ ଉପରେ ଲଦି ଦିଆଗଲା । ହେବାର ବି କଥା । ଯେଉଁ ସମୟରେ ଝିଅମାନେ ଦାଣ୍ଡକୁ ବାହାରୁନଥିଲେ ସେତେବେଳେ ଗୋଟାଏ ଅତି ଅବାଗିଆ ଜିଦ୍‌ଖୋର ଝିଅ ଯୋଗୁଁ ଗାଁର ପ୍ରଧାନରାସ୍ତା ଉପରେ ତୁମୁଳ କାଣ୍ଡ ଘଟିଗଲା । ବାପା ତାଙ୍କର ଛୋଟ ଜମିଦାରୀପଣିଆର ଶେଷ ଦର୍ପ ଟିକକ ପ୍ରୟୋଗକରି ଗାଁ ଦାଣ୍ଡ ମଝିରେ ଗୋଟିଏ ଯୁଦ୍ଧ କ୍ଷେତ୍ର ସୃଷ୍ଟି କରିଥିଲେ । ଆମ ଗାଁର କରଣ ଓ ଖଣ୍ଡାୟତମାନେ ପ୍ରତ୍ୟେକ ନିଜକୁ ଅଳ୍ପ ବହୁତ ଜମିଦାର ବୋଲି ଜାଣନ୍ତି । ଯଦିଓ ସେତେବେଳେକୁ କାହାରି କାହାରି ଜମିଦାରୀର ଅଂଶ କଡ଼ାକ୍ରାନ୍ତିରେ ପହଞ୍ଚି ସାରିଥିଲା । ତିନି ଓଳିରେ ଥରେ ପେଟ ପୂରୁନଥିଲେ ସୁଦ୍ଧା ଢ଼ମ ଛାଡୁନଥିଲା । ଯାହାହେଉ ପରେ ବାପାଙ୍କ ମନରେ ବଡ଼ ଯାତନା ଓ ଅବଶୋଷ ଆସିଲା । ମୁଁ ତ ପୂରା ଚୁପ୍ ଚାପ୍ ଗୋଟିଏ ଘରେ ବସି ରହିଲି । ସମସ୍ତଙ୍କର ଘୃଣା ଓ ସମାଲୋଚନାର ପାତ୍ର ହୋଇ ସୁଦ୍ଧା ମୋର ଅନ୍ତିମ ଲକ୍ଷ୍ୟ ମୁଁ ଛାଡ଼ି ନଥାଏ । ଏଣେ କିପରି ପୁରୀ ଯିବି ତାହା ସ୍ଥିର କରି ପାରୁ ନଥାଏ । ମୋତ୍ ଉପରେ ମୁଁ କିଂକର୍ତ୍ତବ୍ୟବିମୂଢ଼ ହୋଇ ପଡ଼ିଲି । କିନ୍ତୁ ମୋତେ ଯିବାକୁ ହିଁ ହେବ । ଏଣେ ପରିବାର ତଥା ଗାଁର ପ୍ରାୟ ସମସ୍ତେ ମୋ ବିରୋଧରେ ।

ଅନେକ ଲୋକ ଆସି ବାପାଙ୍କୁ ବୁଝାଉଥାନ୍ତି । କେହି କେହି କହୁଥାନ୍ତି, 'ଏପରି ଅବାଧ୍ୟ ଝିଅକୁ କାହିଁକି ଅଟକାଇ ରଖିବାକୁ ଚେଷ୍ଟା କରୁଛ ? ଛାଡ଼ିଦିଅ ଛତରୀ ଯୁଆଡ଼େ ଯାଉଛି ଯାଉ ।' ବାପା କହୁଥାନ୍ତି, 'ତାର ମା ନାହିଁ, ମୁଁ ବଢ଼ିଲା ଝିଅକୁ କୌଣସି ମତେ ପଦାକୁ ଛାଡ଼ିଦେବି ନାହିଁ । ମୁଁ ସମସ୍ତଙ୍କର ସବୁକଥା ଶୁଣି ସ୍ଥାଣୁ ପରି ଅବିଚଳିତ ଥାଏ । ବାପା କହିଲେ, 'ମୁଁ ଗାଁରେ ଥିବା ପର୍ଯ୍ୟନ୍ତ ସେ ଏମିତି ଲୀଳା ଲଗାଇବ ।' ତା'ପରେ ସେ କଟକ ଚାଲିଗଲେ । 'ସେ ଭଲ ଭାବରେ ଜାଣିଥିଲେ ଯେ ତାଙ୍କର ଅନୁପସ୍ଥିତି ଓ ଅଜାଣତରେ ମୁଁ କୁଆଡ଼େ ଯିବି ନାହିଁ । ଗୋଟିଏ ସ୍ପଷ୍ଟୀକରଣ ମୁଁ ଏ ରଚନାର ତୃତୀୟ ପରିଚ୍ଛେଦରେ ଦେଇଥିଲି ଯେ ଲବଣ ସତ୍ୟାଗ୍ରହବେଳେ କଟକରୁ ଯେଉଁ ସତ୍ୟାଗ୍ରହଦଳ ଇଞ୍ଚୁଡ଼ି ଅଭିମୁଖେ ଯାତ୍ରା କରିଥିଲେ ତା'ର ପ୍ରଥମ ସେନାପତି ଥିଲେ ଆଚାର୍ଯ୍ୟ ହରିହର ଓ ସେ ଦଳରେ ପଣ୍ଡିତ

ପ୍ରାଣକୃଷ୍ଣ ପଢ଼ିଆରୀ ଥିଲେ । ସୁରେନ୍ଦ୍ର ନାଥ ପଟ୍ଟନାୟକ (ପୂର୍ବତନ ରାଜସ୍ୱମନ୍ତ୍ରୀ) ମୋତେ ସୂଚାଇ ଚିଠିଟିଏ ଲେଖିଛନ୍ତି । ସେଥିରେ ସେ ପ୍ରଥମ ସତ୍ୟାଗ୍ରହୀ ଗୋପବନ୍ଧୁ ଚୌଧୁରୀ ଥିଲେ ଏବଂ ସେ ଦଳରେ ପଣ୍ଡିତ ପଢ଼ିଆରୀ ନଥିଲେ ବୋଲି ଲେଖିଛନ୍ତି । କିନ୍ତୁ ଆମ ଗାଁ ବାଟେ ସତ୍ୟାଗ୍ରହ ବାହିନୀ ଯିବାବେଳେ ଆଚାର୍ଯ୍ୟ ମହାଶୟ ତହିଁର ଅଗ୍ରଣୀ ଥିଲେ । ମୋର ସ୍ପଷ୍ଟ ମନେ ଅଛି ଦାଢ଼ିବାଲା ଆଚାର୍ଯ୍ୟ ମହାଶୟଙ୍କୁ ମୁଁ ଓ ମୋ ସାଥୀମାନେ ନିଜ ହାତରେ ଫୁଲଚନ୍ଦନ ଦେଇ ଅଭ୍ୟର୍ଥନା କରିଥିଲୁ । ଆମ ଗାଁରେ ସତ୍ୟାଗ୍ରହୀମାନଙ୍କୁ ଅଭ୍ୟର୍ଥନା କରିବାରେ ଯିଏ ପ୍ରଧାନ ଉଦ୍ୟୋକ୍ତା ଥିଲେ ସେ ଦଳିତ ଜାତିର ସଂଘ ଅଫିସରେ ହିସାବ ରକ୍ଷକ ଭାବରେ କାମ କରୁଥିବା ରଘୁନାଥ ଦାସ । ତାଙ୍କୁ ପଚାରିବାରେ ସେ ମଧ୍ୟ ମୋ କଥାରେ ଏକମତ ହୋଇଛନ୍ତି । ଆମ ଗାଁରେ ପହଞ୍ଚିବାର ପୂର୍ବଦିନ ରାତିରେ ସତ୍ୟାଗ୍ରହୀମାନେ ଇନ୍ଦୁପୁରରୁ ଆସି ଖରସୁଆଁ ନଈବାଲିରେ ରହିଥିଲେ ଏବଂ ସକାଳେ ଆମ ଗାଁ ବାଟ ଦେଇ ଯାଉଥିବାବେଳେ ସେମାନଙ୍କୁ ଗାଁରେ ଅଭ୍ୟର୍ଥନା ଦିଆ ଯାଇଥିଲା । ଝୁଲିଆ ସାହି ଚଉପାଢ଼ୀରେ ସେମାନଙ୍କୁ ଚୂଡ଼ା ଓ ଗୁଡ଼ ଜଳଖିଆ ଆକାରରେ ଖାଇବାକୁ ଦିଆ ଯାଇଥିଲା । ସୁରେନ୍ଦ୍ରବାବୁ ମୋତେ ଲେଖିଛନ୍ତି ଯେ ଆଚାର୍ଯ୍ୟ ମହାଶୟ ମୋଟେ ସତ୍ୟାଗ୍ରହ ବାହିନୀର ସେନାପତି ନଥିଲେ । ସେ ସାଧାରଣ ପଦାତିକ ସୈନ୍ୟ ଥିଲେ । ଗୋପବାବୁ ପ୍ରଥମ ସେନାପତି ଓ ସେ କଟକରୁ ଗିରଫ ହୋଇ ଯିବାରୁ ଆଚାର୍ଯ୍ୟ ମହାଶୟ ସତ୍ୟାଗ୍ରହୀମାନଙ୍କୁ କିଛି ବାଟ ପାଦରେ ଚଲାଇ ତା'ପରେ ଟ୍ରେନ୍‌ରେ ନେଇ ଯାଇଥିଲେ । କିନ୍ତୁ ଆମ ଗାଁବାଟେ ଗଲାବେଳେ ଆଚାର୍ଯ୍ୟ ମହାଶୟଙ୍କୁ ନେତୃତ୍ୱ ନେଉଥିବାର ମୁଁ ଦେଖିଛି । ତେଣୁ ଏ ବିଷୟରେ ମୁଁ ଅଧିକ ଜାଣି ନାହିଁ ।

## (୬)

ବାପା ତ କଟକ ପଳାଇଲେ ରାଗରେ । ତା' ଭିତରେ ପୁରୀର ନାରୀ ସ୍ୱେଚ୍ଛାସେବିକାମାନଙ୍କର ପ୍ରଥମ ଶିବିର ଆରମ୍ଭ ହୋଇ ଶେଷ ହେବାକୁ ବସିଲାଣି । ମୁଁ ସେ ପର୍ଯ୍ୟନ୍ତ ପୁରୀ ଯାଇ ପାରିଲି ନାହିଁ । ପୁଣି ପୂର୍ବୋକ୍ତ ଘଟଣା ପରେ ଗାଁ'ର ଶ୍ରମ ସଂସ୍ଥାନ ଅନୁଷ୍ଠାନକୁ ମଧ୍ୟ ଯିବା ମୋର ବନ୍ଦ ହୋଇ ଯାଇଥାଏ । ସମସ୍ତଙ୍କର ତୀବ୍ର ଘୃଣା ଦୃଷ୍ଟି ମୋ ଉପରେ !? ମୋତେ ବି ଅନ୍ୟଲୋକଙ୍କ ଆଗକୁ ବାହାରିବାକୁ ଭଲ ଲାଗୁନଥାଏ । ଖୁଡ଼ୀ ମୋତେ ଅନବରତ ଭର୍ତ୍ସନା କରୁଥାଏ । ଏପରି ସମୟରେ ମୋତେ ଜଣେ ବୁଦ୍ଧି ଦେଇ କହିଲେ, 'ତୁ ତ ବଡ଼ଝିଅ ହୋଇଗଲୁଣି, ତୋତେ ପନ୍ଦର ବର୍ଷପୂରି ଷୋହଳ ବର୍ଷ ଚାଲିଲାଣି । ତୁ, ଜିଲ୍ଲାମାଜିଷ୍ଟ୍ରେଟ ଓ ପୋଲିସ୍ ଥାନାକୁ ଗୋଟିଏ ଗୋଟିଏ ନୋଟିସ୍ ଲେଖି ଦେ ଯେ,

"ମୁଁ ବଡ଼ହୋଇଥି ମୋର ସ୍ୱାଧୀନ ମତ ଉପରେ ବାଧା ଦେବାରେ ବାପାଙ୍କର ହକ୍‌ନାହିଁ ଓ ବାପା ମୋତେ ଘରେ ଅଟକାଇ ରଖିଛନ୍ତି । ପୋଲିସ୍ ସାହାଯ୍ୟରେ ମୋତେ ଘରୁ ଯିବାକୁ ଦିଆଯାଉ ।" କଥାଟା ମୋର ମୋଟେ ପସନ୍ଦ ହେଲାନାହିଁ । ସେପରି ଭାବରେ ଯିବାକୁ ମୁଁ ଆଦୌ ଉଚିତ୍ ମନେକଲି ନାହିଁ ।

ପୁରୀର ପ୍ରଥମ ଶିବିର ବୋଧହୁଏ ସରିଯାଇ ଦ୍ୱିତୀୟ ଶିବିର ଆରମ୍ଭ ହେବାର ସମୟ ନିକଟେଇ ଆସିଥାଏ । ମୁଁ ପୁଣି ବାପାଙ୍କ ପାଖକୁ ଗୋଟାଏ ଚିଠି ଲେଖିଲି । ତା'ର ସାରମର୍ମ ଥିଲା ଯେ ମୋତେ ପୁରୀକୁ ଯିବା ପାଇଁ ଅନୁମତି ନ ଦେବା ପର୍ଯ୍ୟନ୍ତ ମୁଁ ଉପାସ ରହିବି । ବାପା ବା କାହିଁକି ସେ ଧମକକୁ ଖାତିର କରନ୍ତେ । ନିରୁତ୍ତର ରହିଲେ । ମୁଁ ଏଥର ଉପାସ ରହିଲି । ଖୁଡ଼ି ମଧ୍ୟ ବାପାଙ୍କ ପାଖକୁ ଚିଠି ଲେଖାଇଲା । ଦୁଇତିନିଦିନ ଉପାସ ରହିବା ପରେ ଖବରକାଗଜରେ କୁଆଡ଼େ ମୋ ବିଷୟରେ ବାହାରିଲା । ସେଥିରେ ବାହାରିଥିଲା ଯେ, ମୁଁ ସେବାଦଳ ତାଲିମ ଶିବିରକୁ ବାହାରିଛି । ମୋ ବାପା ମୋତେ ଘରେ ବନ୍ଦକରି ଚାବି ଦେଇ ରଖିଛନ୍ତି । ମୁଁ ଅନଶନ ସତ୍ୟାଗ୍ରହ କରି ଘର ଭିତରେ ବନ୍ଦୀ ଅବସ୍ଥାରେ ଅଛି ବୋଲି ।

ବିଂଝାରପୁରର ଜଣେ ସଂସ୍କାର ପନ୍ଥୀ ହରିଜନ, (ମୋର ଜାତି, ଯାହାଙ୍କର କୌଳିକ ବୃତ୍ତି ହେଉଛି ଖଜୁରୀ ତାଡ଼ି ବା ମଦ ବିକ୍ରି କରିବା) ସେ 'ଆର୍ଯ୍ୟସମାଜ'ର କର୍ମୀଥା'ନ୍ତି । ଦୟାନନ୍ଦ ସରସ୍ୱତୀଙ୍କର 'ସତ୍ୟାର୍ଥ ପ୍ରକାଶ' ଓଡ଼ିଆ ମୋଟା ବହିଖଣ୍ଡିଏ ସେ ମୋ ପାଖକୁ ପଠାଇ ଦେଇଥା'ନ୍ତି । ସେ ଥିଲେ ଗଞ୍ଜାମର ଶ୍ରୀବତ୍ସ ପଣ୍ଡାଙ୍କର ସମାଜ ସଂସ୍କାର ପନ୍ଥାର କର୍ମୀ । ଓଡ଼ିଆରେ ଆର୍ଯ୍ୟ ପତ୍ରିକାର ସମ୍ପାଦନା ସେ କରୁଥାନ୍ତି । ତାଙ୍କ ନାମ ବୀର କିଶୋର ବେହେରା । 'ସାବାସ୍ ଗୋଦାବରୀ' ବୋଲି ତାଙ୍କ ପତ୍ରିକାରେ ଗୋଟିଏ ପ୍ରବନ୍ଧ ଲେଖି ପ୍ରକାଶ କରି ଦେଲେ । ଏକଥା ମୁଁ ପରେ ଜାଣିଲି । ଯେତେବେଳେ 'ଘରୁ ଯିବାପରେ ପରମ ପୂଜ୍ୟ 'ବାପା' ଗୋପବନ୍ଧୁ ଚୌଧୁରୀ ମୋତେ 'ଆର୍ଯ୍ୟ' ପତ୍ରିକା ଦେଖାଇ ଥଟ୍ଟା କରି ଚିଡ଼ାନ୍ତି, ସେତେବେଳେ ମୋତେ ବଡ଼ ଲାଜ ଲାଗେ ତାହାକୁ ପଢ଼ି ।

ମୁଁ ଉପାସ ରହିବାର ତିନି ଚାରିଦିନ ହୋଇଗଲା । କୌଣସି ନୀତି ନିୟମ ଉଦ୍ଦେଶ୍ୟରେ ଯେ ମୁଁ ଉପାସ କରିଥାଏ ତାହା ନୁହେଁ । କେବଳ ବାପାଙ୍କ ମନ ବଦଳାଇବାକୁ ହେବ ମୋତେ କୌଣସି ପ୍ରକାର, ସେଇଥିପାଇଁ ଥିଲା ମୋର ଏ ଉଦ୍ୟମ । ମୋ ପିଉସୀ, ଯିଏ ବୋଉ ମଲା ପରେ ମୋର ଓ ଆମ ଭାଇ ଭଉଣୀମାନଙ୍କର ବେଶୀ ତତ୍ତ୍ୱ ନେଉଥିଲେ ସେଇ ନୟନୀଦେଈ ଆସି ମୋତେ ଜବରଦସ୍ତ ଉପାସ ଭାଙ୍ଗିବାପାଇଁ ବହୁ ଚେଷ୍ଟା କରୁଥିଲେ । ତୋକେ, ଦି' ଢୋକ ମୋ ତଣ୍ଟିଭିତରକୁ ବି ଚାଲିଯାଇଛି ଥରେ ଖଣ୍ଡେ । ସେଇଥିପାଇଁ ଉପାସଟାକୁ ସଂପୂର୍ଣ୍ଣ ଅନଶନବୋଲି ନିଷ୍ଠାର ସହିତ ମୁଁ ବିଚାରି ପାରୁ ନାହିଁ । ମୋ ଉପାସର

ପାଞ୍ଚଦିନ ଦିନ କଟକରୁ ବାପା, ମୋ ଦାଦା ଗୌରାଙ୍ଗ ଚରଣ ଦାସଙ୍କ ପାଖକୁ ଖଣ୍ଡିଏ ଚିଠି ଲେଖିଲେ । ଦାଦା, ସେତେବେଳେ ସେଇ ଗାଁ ପାଇଁ ତାଙ୍କ ଜୀବନର ଗୋଟାଏ ବଡ଼ ତ୍ୟାଗ କରିଛନ୍ତି ବୋଲି କହିବାକୁ ହେବ । ସେ ପିଲାଦିନେ ଖୁବ୍ ଭଲ ପଢୁଥିଲେ ଓ ଭାରି ବୁଦ୍ଧିମାନ୍ ଛାତ୍ରଥିଲେ ବୋଲି ଶୁଣୁ । ଚିତ୍ର କରିବାରେ ମଧ୍ୟ ସେ ଖୁବ୍ ଦକ୍ଷଥିଲେ । ସେଥିଲାଗି ସେ ଲାଭ କରିଥିବା ରୂପା ପଦକକୁ ସେ ନଥିବାବେଳେ ତାଙ୍କ ବାକ୍ସରୁ କାଢ଼ି ଦେଖୁଁ । ତାଙ୍କ ବାପା କଟକରେ ରହୁଥିଲେ । ପୁଅ କୃତିତ୍ୱର ସହିତ ପାଶ୍ କରିଥିଲା ବୋଲି ସେ ତାଙ୍କୁ ନେଇ କଟକରେ ଏଣ୍ଟ୍ରାନ୍ସ ପଢ଼ାଇବା କଥା । କିନ୍ତୁ ଗାଁ'ର ଉନ୍ନତି ପାଇଁ ଗୋଟିଏ ନିମ୍ନ ପ୍ରାଇମେରୀ ସ୍କୁଲଟିଏ ଆରମ୍ଭ କରିବା ଲାଗି ତାଙ୍କୁ ଓ ନାରାୟଣ ଚନ୍ଦ୍ର ଦାସଙ୍କୁ ଗାଁର ଯୁବକଦଳ ଭାର ଦେଇଥିବାରୁ ସେ ସେହି କାମରେ ଲାଗିଲେ । କିଛିଦିନ ସ୍ୱେଚ୍ଛାସେବକ ଭାବରେ କାମ କରିବା ପରେ କଟକେ ପଢ଼ିବାକୁ ଯାଇଥାନ୍ତେ ମାତ୍ର ତାଙ୍କର ପିତୃ ବିୟୋଗ ଘଟିବାରୁ ତାଙ୍କ ଉଚ୍ଚଶିକ୍ଷାରେ ଡୋରି ବନ୍ଧାଗଲା । ଶିକ୍ଷକ ଭାବରେ ତାଙ୍କର ଜୀବନ କଟିଥିଲା । କବୀରପୁର ଗୁରୁ ତାଲିମ ବିଦ୍ୟାଳୟରୁ ଶିକ୍ଷାଗ୍ରହଣରେ ତାଙ୍କ ପାଠପଢ଼ା ସୀମିତ ହେଲା । ପରେ ଚାକିରୀରୁ ଅବସର ଗ୍ରହଣ କଲାପରେ ସେ ଅଭାବ ଅସୁବିଧାରେ କାଳ କାଟୁଥିଲେ । ମୁଁ ପଢ଼ିବାବେଳେ ସେ ଆମ ସ୍କୁଲର ପ୍ରଧାନ ଶିକ୍ଷକ ଥିଲେ । ମୋର ବାଲ୍ୟଗୁରୁ ଅଗଣି ଚରଣ ଦାସ ମଧ୍ୟ ସ୍କୁଲରେ ଥିଲେ । ବୋଉ ଥିବାବେଳେ ମୋ ଭାଇ ଓ ଆମ ସାହିର ଦାମ ବଡ଼ବାପାଙ୍କ ପୁଅମାନଙ୍କର ସେ ଗୃହ ଶିକ୍ଷକ ମଧ୍ୟ ଥିଲେ । ପୁରାଣରୁ ଭଲ ଭଲ ଗପସବୁ କହି ସେ ଆମକୁ ସାହିତ୍ୟ ପଢ଼ାଉଥିଲେ । ମୁଁ ଟିକିଏ ଲେଖି ପଢ଼ି ଶିଖିଥିଲି ।

ବାପାଙ୍କ ଚିଠିଆସି ସେଇ ଗୌରାଙ୍ଗ ଦାଦାଙ୍କ ପାଖରେ ପହଞ୍ଚିଲା । ଲେଖାଥିଲା, ''କଲ୍ୟାଣୀୟ ଗୌରାଙ୍ଗ, ଗୋଦାବରୀକୁ ବିଦା କରିଦିଅ । ଆଜିଠୁଁ ମୁଁ ଆଉ ତା' ମୁହଁ ଚାହିଁବି ନାହିଁ । ଖବର କାଗଜରେ ତା' ନାଁରେ ଯାହା ଲେଖା ବାହାରିଲା ! ବାଖରାବାଦ ଛକରେ ଶ୍ରୀମତୀ ସରଳାଦେବୀ ଛିଡ଼ା ହୋଇ ମୋତେ ଡାକିଲେ । ମୁଁ ତାଙ୍କ ପାଖକୁ ଗଲାରୁ ମୋତେ ଅପମାନ କରି ବହୁତ କଥା କହିଲେ । ମୁଁ କହିଲି, 'ଆପଣ ଯାହା କହନ୍ତୁ ପଛେ, ବଡ଼ ଝିଅ, ତା'ର ମା' ନାହିଁ । କାହା ଦାୟିତ୍ୱରେ ଛାଡ଼ିବି ?' ସେ ତାଙ୍କ ଦାୟିତ୍ୱରେ ଛାଡ଼ିବାକୁ କହିଲେ । ମୁଁ ରାଜି ନହେବାରୁ ସେ ପଚାରିଲେ, 'ରମାଦେବୀଙ୍କ ଦାୟିତ୍ୱରେ ଛାଡ଼ିବ ?' ମୁଁ କହିଲି, 'ସେ ଯଦି ଜବାବ ଦେବେ ଓ ଲେଖିଦେବେ ତାହେଲେ ତାଙ୍କରି ଦାୟିତ୍ୱରେ ଛାଡ଼ିପାରେ ।' ସେ ମୋତେ ରମାଦେବୀଙ୍କ ପାଖକୁ ବାଧ୍ୟ କରିନେଲେ । ରମାଦେବୀ ତା'ର ସବୁ ଦାୟିତ୍ୱ ନେବେ ବୋଲି ମୋତେ ପ୍ରତିଶ୍ରୁତି ଦେବାରୁ ମୁଁ ତାଙ୍କୁ, 'ସେ ଚାଲିଯାଉ ବୋଲି' କହି ଦେଲି । ରମାଦେବୀ ଯଦି କୌଣସି ସ୍ତ୍ରୀଲୋକଙ୍କୁ ପଠାନ୍ତି ତାଙ୍କ ହାତରେ ତା'କୁ ବିଦା କରିଦବ । ସେ

ଯେପରି ପୁନର୍ବାର ଆମ ଘରକୁ ନ ଫେରେ । ତା'ଙ୍କୁ କହିବ, 'ମୁକୁନ୍ଦ ଦାସ ବଂଶର ସେ କଳଙ୍କ ଆଉ ଯେପରି ନ ଫେରେ । ମୁଁ ତା' ମୁହଁ ଚାହିଁବି ନାହିଁ ।'' ତାଙ୍କ ଚିଠିରୁ ଅତ୍ୟନ୍ତ ମର୍ମବେଦନା ସୂଚିତ ହେଉଥିଲା । କିନ୍ତୁ ମୋରି ପାଇଁ ମା' ରମାଦେବୀ ଜଣେ ନାରୀକର୍ମୀ ପଠାଇବେ, ମୁଁ ଯିବି- ଏକଥା ମୁଁ କଳ୍ପନା କରିପାରୁ ନଥାଏ ।

## (୭)

ତା'ପରଦିନ ସକାଳୁ ମୋର ଉପାସର ଛ'ଦିନ । ସେଦିନ ମୋତେ କିଏ ଜଣେ ଆସି କହିଲା- 'ତୋତେ ନାଲୁଭାଇ ଓ ପାଣୁଆ ଭାଇ ଡାକୁଛନ୍ତି । ତୋତେ ନବାକୁ କିଏ ଜଣେ ସ୍ତ୍ରୀଲୋକ ଆସିଛନ୍ତି' । ମୁଁ ବିଶ୍ୱାସ କରି ପାରିଲି ନାହିଁ । ତାଙ୍କ ଘରକୁ ଯାଇ ଦେଖିଲି ପ୍ରକୃତରେ ଜଣେ ଅପରିଚିତା ସଂଭ୍ରାନ୍ତ ମହିଳା ଆସିଛନ୍ତି । ସେ ବଙ୍ଗଳାରେ କଥା କହୁଥାଆନ୍ତି । ତାଙ୍କୁ ପ୍ରଣାମ କରିବାକୁ ନାଲାଦା କହିଲେ । ତାଙ୍କରି ସାଙ୍ଗରେ ମୋର ପୁରୀ ଯିବାକଥା ଶୁଣି ମୋ ମନ ଖୁସି ହୋଇଗଲା । ସେ ଭଦ୍ରମହିଳା ହେଉଛନ୍ତି ବୀଣାପାଣି ଦେବୀ । ବନବିହାରୀ ପାଳିତ, ଓକିଲଙ୍କ ବିଧବା କନ୍ୟା । ବନବିହାରୀ ବାବୁ ଜମିଦାର ତଥା କଟକର ଜଣେ ବିଶିଷ୍ଟ ନାଗରିକ ଥିଲେ । ମୁଁ ତ ପୁରୀ ଯିବାକୁ ବାହାରିଲି ସାଙ୍ଗରେ ପୁଣି ନିଜର ଚଳିବା ପାଇଁ ଲୁଗାପଟା ବିଛଣା ପତ୍ର ତ ନବାକୁ ହବ । ଖୁଡ଼ୀକିଛି ଦେଲା ନାହିଁ । ଦୁଇ ଚାରିଖଣ୍ଡ ଖଦଡ଼ ଲୁଗା ମୁଁ ଆଗରୁ ଶ୍ରୀମତୀ ଘରେ ରଖି ଦେଇଥିଲି । ସେତିକି ଧରି ବାହାରିଲି । ମୋ ଭାଇ ଘରୁ ଖୁଡ଼ୀକୁ ଲୁଚାଇ ମୋର ଆଉ ଦୁଇଖଣ୍ଡଲୁଗା ରୋଟିଏ ବଡ଼ ଡଉଲିଆରେ ବାନ୍ଧି ଆଣି ଦେଲା । ସେତକ ଧରି ମୋର ଯାତ୍ରା ଆରମ୍ଭ ହେଲା । ଆମ ଗାଁରୁ ଯାଜପୁରକୁ ବଳଦଗାଡ଼ି ଛଡ଼ା ଆଉ କୌଣସି ଯାନର ବନ୍ଦୋବସ୍ତ ସେତେବେଳେ ନଥିଲା । ବର୍ଷାଦିନେ ମାଟି ସଡ଼କରେ କାଦୁଅ ଏପରି ହୁଏ ଯେ ଗାଡ଼ିଚକ ଫୁଟେ ଗଭୀରରେ ମାଟି ଭିତରେ ଦବି ଯାଏ । ବଳଦ ବିଚରାଙ୍କୁ ବହୁ କଷ୍ଟରେ ନାକେଦମ ହୋଇ ଗାଡ଼ି ଆରୋହୀ ଓ ସେମାନଙ୍କ ଜିନିଷପତ୍ରକୁ ବୋହିବାକୁ ପଡ଼େ । ଅଳ୍ପଲୋକ ବି ବଳଦଗାଡ଼ି ବ୍ୟବହାର କରନ୍ତି । ବହୁଲୋକ ପାଦରେ ଚାଲି ଚାଲି ଯାଜପୁର ଯାଆନ୍ତି । ବିଞ୍ଝାରପୁର ଅଞ୍ଚଳରୁ ବାହାରକୁ ଯିବାକୁ ହେଲେ ବିନା ନଈ ପାରିରେ କେବଳ ଯାଜପୁର ବାଟଛଡ଼ା ଅନ୍ୟବାଟ ନାହିଁ । ମୁଁ ତ ସମସ୍ତଙ୍କଠୁଁ ବିଦାୟ ନେଇ ବାହାରି ପଡ଼ିଲି । ମୋର ପିଉସୀମାନେ ଆଖି ଛଳଛଳ କରି ଠିଆ ହେଲେ । ଗାଁର କେତେକେ ଭାବିଥିବେ ଗାଁର କଳଙ୍କଗଲା । ଭାଇ ଦୁଇଜଣ ନିରିମାଖି ପରି ଖାଲି ଠିଆ ହୋଇଥା'ନ୍ତି । ପ୍ରକୃତରେ ସେମାନଙ୍କର ମୋ ବ୍ୟତୀତ ଆଉ କାହା ଉପରେ ବା ଜୋର୍ ଥିଲା । ଯେଉଁ ମମତା ମୋତେ ମୋଟେ ସ୍ପର୍ଶ କରୁନଥିଲା ହଠାତ୍ ତାହା ପୁଣି ପଛକୁ ଟାଣିବାକୁ ବସିଲା ।

ଗାଡ଼ିରେ ବସିବା ପରେ ସେହି ଦୁହିଁଙ୍କ ଶୁଖିଲା ମୁହଁ ଖାଲି ମତେ ଦିଶିଲା । ଅବଶ୍ୟ ତାହା ମୋତେ ଫେରାଇ ପାରିଲା ନାହିଁ । ତଥାପି ଚିରଦିନ ମନଭିତରେ ଗୋଟିଏ ଦୁର୍ବଳତା ମୁଁ ତାଙ୍କ ପାଇଁ ଅନୁଭବ କରି ଆସିଛି । ବଞ୍ଚିଥିବା ପର୍ଯ୍ୟନ୍ତ ତାହା ରହିଥିବ ବୋଲି ହୃଦ୍‌ବୋଧ ହେଉଛି ।

ଆମେ ଯାଇ ଯାଜପୁରରେ ପହଞ୍ଚିଲୁ । ପ୍ରବୀଣ ଓକିଲ ଜଗମୋହନ ତେୱାରୀଙ୍କ ଘରେ ଆମର ଖାଇବାର ବ୍ୟବସ୍ଥା ହୋଇଥିଲା । ବୀଣାଦିଦି ଅତ୍ୟନ୍ତ ଭକ୍ତିମତୀ ମହିଳା । ସେ ଜଗମୋହନ ବାବୁଙ୍କ ପାଦଧୂଳି ନେଲେ । କାରଣ ସେ ବୟସ୍କ ଲୋକ ଥିଲେ । ସେଠାରେ ପହଞ୍ଚି ଟିକିଏ ମନରେ ଭରସା ହେଲା । ଏଇଥି ପାଇଁ ଭରସା ଆସିଲା ଯେ, ଯା'ତୁ ମୁଁ ଏକା ନୁହେଁ ଆଉ ଜଣେ ଅଳ୍ପ ବୟସ୍କା ଭଉଣୀ କୃଷ୍ଣ କାମିନୀ ଅପା ମଧ୍ୟ ବାହାରିଛନ୍ତି ଦେଖି । ସେ ଅବଶ୍ୟ ବିବାହିତା । ମୋ ପରି  ପ୍ରତିକୂଳ ପରିସ୍ଥିତି ସାଙ୍ଗରେ ଲଢ଼ି ବାହାରିନଥିଲେ । ତାଙ୍କ ସ୍ୱାମୀ, ସୁବୋଧ ଚନ୍ଦ୍ର ଦାସ ଜଣେ ପ୍ରଗତିଶୀଳ ବ୍ୟକ୍ତି । ତାଙ୍କ ସ୍ତ୍ରୀଙ୍କୁ ସାଧାରଣ କ୍ଷେତ୍ରରେ କାର୍ଯ୍ୟ କରିବାପାଇଁ ସେ ଆଗେଇ ଦବାକୁ ଆସିଥାନ୍ତି । ସେଇ ସ୍ୱନାମଧନ୍ୟା କୃଷ୍ଣ କାମିନୀ ଅପା ହେଉଛନ୍ତି ଆକାଶବାଣୀ କଟକର ପ୍ରଥମ ମହିଳା ଯିଏକି ଥିଲେ 'ଗାଁ ଗହଳି' କାର୍ଯ୍ୟକ୍ରମର ନାରୀ ବାର୍ତ୍ତା ପରିବେଷିକା । ଯାଜପୁରର ବିଶିଷ୍ଟବ୍ୟକ୍ତି ବିରୂପାକ୍ଷ କର ପ୍ରଭୃତି ବୀଣା ଦି'ଙ୍କ ସହିତ ସାକ୍ଷାତ କରିବାକୁ ଆସିଥାନ୍ତି । ଆମ ତିନିଜଣଙ୍କୁ ପୁଣି ବଳଦ ଗାଡ଼ିରେ ବସି ବୈତରଣୀ... 

ସେତେବେଳେ ସମୟଟା ନଭେମ୍ବରର ଶେଷ କିମ୍ବା ଡିସେମ୍ବରର ଆରମ୍ଭ ହେବ ପରା । ଶୀତ ହେଉଥାଏ । ଖଣ୍ଡିଏ ଘୋଡ଼ାଇ ହେବା ଚାଦର ରଘୁବାବୁ କିଣିଦେଲେ । ଚାରିଛ'ଖଣ୍ଡ ଲୁଗା ଓ ଚାଦର ଖଣ୍ଡିଏ ସମ୍ବଳ । ତାହା ପୁଣି ଗୋଟିଏ ତଉଲିଆରେ ବନ୍ଧା । ବେଡ଼ିଂ, ଟ୍ରଙ୍କ କି ବାକ୍ସ କିଛି ନାହିଁ । ଷ୍ଟେସନରେ ପହଞ୍ଚି ରାତି ପାସେଞ୍ଜର ଗାଡ଼ିରେ ଆମେ ପୁରୀ ଅଭିମୁଖେ ଚାଲିଲୁ । ମୋ ଜୀବନର ଏହା ପ୍ରଥମ ଟ୍ରେନ୍ ଯାତ୍ରା ଓ ସହର ଦେଖା । ମନଟା କିପରି ଅଶ୍ୱସ୍ତି ଲାଗୁଥାଏ । ପରଦିନ ୧୨ଟା ସରିକି ଆମେମାନେ ଯାଇ ପୁରୀରେ ପହଞ୍ଚିଲୁ । ଗୋଟିଏ ବଡ଼ କୋଠା ଘରେ, ଦ୍ୱିତୀୟ ଶିବିରର ଶିବିରାର୍ଥୀମାନେ ରହିଥା'ନ୍ତି । ସେତେବେଳକୁ ପ୍ରଥମ ଶିବିର ସରିଯାଇଥାଏ । ମାତ୍ର ଶିବିର, ଅନ୍ୟତ୍ର ବଳିଆପଣ୍ଡା ଠାରେ ସମୁଦ୍ରକୂଳ ଖୋଲାବାଲି ପ୍ରାନ୍ତରରେ ହେବାର ବ୍ୟବସ୍ଥା ହୋଇଥାଏ । ପୂର୍ବୋକ୍ତ ଘରେ ପହଞ୍ଚି ଆମେ ଗାଧୁଆ ପାଧୁଆ ସାରିଲୁ । ସେଠାରେ ଗୋଟିଏ ଗଭୀରକୂଅରୁ ପାଣି ଟାଣି ଗାଧୋଇବାକୁ ହୋଇଥାଏ । ଦିନ ତିନିଟା ସରିକି ସେହି ଘରର ବାହାର ଅଗଣାରେ ସବୁ

ଶିବିରାର୍ଥୀଙ୍କୁ ଲାଇନକରି ଠିଆ ହେବାର ଆଦେଶ ହେଲା । ମୁଁ ତ ନୂଆ ହୋଇଯାଇଥାଏ । ସେଠାରେ ଆମକୁ ଠିଆ ହେବାକୁ ହବ କି ନାହିଁ ହୁକୁମକୁ ଅପେକ୍ଷା କରିଥାଏ । ବୋଉ, ପୂଜ୍ୟାରମାଦେବୀଙ୍କୁ ଦେଖିବାକୁ ପାଇଲି । ତାଙ୍କୁ ପ୍ରଣାମ କଲି । ସେ ମୋ ଉପରେ ବିଶେଷ ସନ୍ତୁଷ୍ଟଥିବାର ମୋର ମନେ ହେଲା ନାହିଁ । ମୋର ସ୍ୱାସ୍ଥ୍ୟ ତ ସେତେବେଳେ ବେଶ୍ ଭଲଥିଲା । ପାଞ୍ଚ/ଛ'ଦିନ ଉପାସରେ ରହିଲାପରି ମୋ ଚେହେରାରୁ ଜଣା ଯାଉନଥିଲା ବୋଧହୁଏ । ମୋତେ ଦେଖି ତାଙ୍କର ସନ୍ଦେହ ହେଲା କି କ'ଣ କାଗଜରେ ବାହାରିଥିବା ମୋ ଉପବାସ ବିଷୟରେ । ତା'ଛଡ଼ା ସେ ନିଜେ ତ ଅତି ସଂଯତ ଓ ସାମାଜିକ ନିୟମ ଶୃଙ୍ଖଳାକୁ ମାନି ଚାଲିବା ଲୋକ । ମୋ ପରି ଗୋଟିଏ ପନ୍ଦର ଷୋହଳ ବର୍ଷର ଝିଅ କି ଉଦ୍ଦେଶ୍ୟରେ ଏପରି ସମାଜ ବିରୋଧୀ ହୋଇ ଜିଦ୍‌କରି ଆସିଛି, ଯା'ଭିତରେ ପ୍ରକୃତ ଦେଶପ୍ରୀତି ଏତେ ପ୍ରବଳ କି ଖାଲି ଖିଆଲରେ ମାତି ବାହାଦୁରୀ ନେବାକୁ ଆସିଛି ଏ ବିଷୟରେ ସନ୍ଦେହ ତ ହେବାର କଥା । ଅନେକ ଅପରିଣାମଦର୍ଶୀ ଝିଅ କେତେକ ଦାୟିତ୍ୱହୀନ ମଉଜୀବ୍ୟକ୍ତିଙ୍କ କଥାରେ ପଡ଼ି ମୁରବିମାନଙ୍କ ଆଙ୍କଟରୁ ବାହାରିଯାଇ ବିଷମୟ ପରିଣତି ଭୋଗ କରିବାର ଦୃଷ୍ଟାନ୍ତ ତ କମ୍ ଘଟେ ନାହିଁ ଏ ଦେଶରେ ! ତାଙ୍କ ମନରେ ଏପରି ସନ୍ଦେହ ଯଦି ଜାଗରିତ ହୋଇଥିବ ତାହା ତାଙ୍କ ପରି ସୁନୀତି ନିପୁଣା ସମାଜରେ ପ୍ରତିଷ୍ଠିତା ଜଣେ ମୁରବି ଓ ମା' ପକ୍ଷରେ ସ୍ୱାଭାବିକ । ସେତକ ଚିନ୍ତା ଓ ଧୀରସ୍ଥିର ବିଚାର, କାର୍ଯ୍ୟ କଳାପ ତାଙ୍କଠି ନଥିଲେ ତାଙ୍କର ସମ୍ମାନ ସମାଜର ସବୁଶ୍ରେଣୀର ଲୋକଙ୍କ ଆଖିରେ ଏତେ ଉଚ୍ଚତର ସୋପାନକୁ ଯାଆନ୍ତା ନାହିଁ ।

ମୋ ମନଟା ତ ଆଗରୁ ଭାଇ ଦୁଇଟାଙ୍କ ମାୟାରେ କିପରି ବ୍ୟସ୍ତଥିଲା । ତା'ପରେ ଏଠି ପହଞ୍ଚି ଅନ୍ୟ ଶିବିରାର୍ଥୀଙ୍କ ତୁଳନାରେ ନିଜକୁ ଅତି ନ୍ୟୂନ ମନେ ହେଲାମନରେ । କିପରି ଗୋଟାଏ କୋହ କୁହୁଳି ଉଠିଲା । ଶିକ୍ଷାର୍ଥୀମାନଙ୍କ ପଟୁଆର, ଧାଡ଼ିରେ ସହର ପରିକ୍ରମା କରିବାକୁ ଗଲା । ମୁଁ ଓ କୃଷ୍ଣ କାମିନୀ ଅପା ମଧ୍ୟ ଗଲୁ । ମୋତେ ଟିକିଏ ଧକ୍‌କା ଲାଗୁଥାଏ । ପୁଣି ସନ୍ଧ୍ୟାରେ ସମସ୍ତଙ୍କ ବେଡ଼ିଂ ଓ ବାକ୍‌ସ ବଳଦଗାଡ଼ିରେ ଲଦା ହେଲା । ସେ ଗାଡ଼ିରେ ତ କାହିଁ ବଳଦ ନଥାନ୍ତି । ଶିବିରାର୍ଥୀ ପୁଅ ଝିଅ ମିଶି ଗାଡ଼ି ଠେଲି ଠେଲି ବଳିଆପଣ୍ଡା ଅଭିମୁଖେ ଯାତ୍ରା ଆରମ୍ଭକଲେ । କଂଗ୍ରେସ ଅଧିବେଶନ ପାଇଁ ପୁରୀ ମ୍ୟୁନିସ୍‌ପାଲ୍‌ଟି ସବୁ ଅଳିଆ ପକାଇ ବାଲି ଉପରେ ସଡ଼କ ରାସ୍ତା ତିଆରି କରୁଥାନ୍ତି । ନାଗଫେଣିଆ କଣ୍ଟା ସବୁ କଟା ହୋଇ ରାସ୍ତା ତଳେ ପଡ଼ିଥାଏ । ତା'ଉପରେ ଗଛ, ତାଳ ପତ୍ର ଓ ମ୍ୟୁନିସ୍‌ପାଲଟି କଚରା । ପୁଣି ଏସବୁ ଉପରେ ଅଳପ ଅଳପ ମାଟି ପଡ଼ିଥାଏ । ଫଳରେ ଗାଡ଼ି ଠେଲିବାକୁ ଖୁବ୍ କଷ୍ଟ ପଡୁଥାଏ । ମୁଁ ଭାବିଲି, 'ମୁଁ କାହିଁକି ଆସିଲି ?'

ସେଦିନ ରାତିରେ ଶିବିରରେ ରହିଲି । ଅଳ୍ପ କେଇଜଣ ଭଉଣୀ ଆସିଥିଲେ । ପରଦିନ ସକାଳୁ ଭୋର ଚାରିଟାରୁ ଶଯ୍ୟାତ୍ୟାଗ ପରେ ପ୍ରାର୍ଥନା । ଶିବିରର କାର୍ଯ୍ୟକ୍ରମ ଚାଲୁ ହୋଇନଥାଏ । ଉନ୍ମୁକ୍ତ ଦିଗନ୍ତ ବିସ୍ତାରୀ ସମୁଦ୍ରବେଳାରେ ପୁରୀ ଜିଲ୍ଲାର ବିଶିଷ୍ଟ ଫସଲ ନଡ଼ିଆପତ୍ର ଚଟାଇରେ ଶିବିର ଘରର ଛାତ କାଛ ତିଆରି ହୋଇଥିଲା । ବାଉଁଶର ଖୁଣ୍ଟ ଓ ବାଉଁଶର ଆଧାର ଛାତରେ କଡ଼ିରୂପେ ବ୍ୟବହୃତ ହୋଇଥାଏ । ଶିବିରର ଅଫିସ୍, କ୍ଲାସରୁମ, ଭଣ୍ଡାର, ଶିକ୍ଷାର୍ଥୀ ନିବାସ ସବୁ ସେଇ ନଡ଼ିଆ ଚଟେଇ, ବାଉଁଶ ଓ ନଡ଼ିଆ କତା ଦଉଡ଼ିରେ ତିଆରି ହୋଇଥିଲା । ଅଳ୍ପଦୂରରେ ବାଲିରେ ଗାତ ଖୋଳା ହୋଇ ଟ୍ରେଞ୍ଚ ପାଇଖାନା ଅନେକଗୁଡ଼ିଏ ତିଆରି ହୋଇଥିଲା । ତା' ସହିତ ରହିବା ଓ ଶ୍ରେଣୀଗୃହ, ଅଫିସ୍, ଡାକ୍ତରଖାନା, ଷ୍ଟୋର ଇତ୍ୟାଦି ସୁବ୍ୟବସ୍ଥିତ ଭାବେ ଗୋଟିଏ ଦୁର୍ଗ ବା ମହଲର ପରିପାଟୀରେ ନିର୍ମାଣ ହୋଇଥାଏ ।

ପରଦିନ ସକାଳେ ପ୍ରାର୍ଥନା ଓ ଜଳଖିଆ ପରେ ଘର ତିଆରି ଓ ସଫେଇ କାମରେ ସବୁ ଶିକ୍ଷାର୍ଥିନୀମାନେ ଯୋଗଦେବାର ବ୍ୟବସ୍ଥା ହୋଇଥାଏ । ଅନେକଗୁଡ଼ିଏ ନଳକୂପ ବସାଇବାର କାମ ବି ଲାଗିଥାଏ । ମୁଁ ଅନ୍ୟ ଶିକ୍ଷାର୍ଥିନୀମାନଙ୍କ ସହିତ କତା ଦଉଡ଼ି ବଢ଼ାଇ ଦେବା, ବାଲି ଉପରୁ କଟା ସରିଥିବା ନାଗଫେଣୀ କଣ୍ଟା ଉଠାଇ ଏକାଠି କରିବା ଇତ୍ୟାଦି କାମ କଲି । କ୍ରମେ କ୍ରମେ ଶିବିରରେ ଶିକ୍ଷାର୍ଥିନୀମାନେ ବେଶି ସଂଖ୍ୟାରେ ଆସି ପହଞ୍ଚିଲେ ।

ମୋର ମନଟା କିନ୍ତୁ ସବୁବେଳେ ସଙ୍କୁଚିତ ହୋଇରହିଥାଏ ଓ ମୋତେ ବିପନ୍ନ ଲାଗୁଥାଏ । ଯେଉଁପରି ଅବସ୍ଥାରେ ମୁଁ ଘରୁ ବାହାରି ଆସିଛି ସେଥିରେ ବାହାରେ ଚଳିବା ଭଳି ଅତ୍ୟାବଶ୍ୟକ ଜିନିଷପତ୍ର ମଧ କିଛି ଆଣି ପାରିନଥାଏ । ନିଜକୁ ଅତି ନ୍ୟୂନ ଓ ଅସମର୍ଥ ମନେ କରି ବେଶି ସମୟ ଚୁପ୍ ଚାପ୍ ରହି ମନକୁ ମନ ଚିନ୍ତା କରୁଥାଏ । ଭାବୁଥିଲି, ଗାଁର ଓ ଘରର ଲୋକଙ୍କ ପାଖରେ ଯଦିଓ ମୁଁ ବିରକ୍ତି ଓ ସମାଲୋଚନାର ଶରବ୍ୟ ହେଉଥିଲି ତଥାପି ସେଠି ମୋର ବିଶିଷ୍ଟ ସ୍ଥାନ ଥିଲା । ଏଠି ଯେପରି ମୁଁ ସବୁଠାରୁ ହେୟ ଓ ଅତି ନଗଣ୍ୟ । ଅବସ୍ଥା ମୋର ଦୟନୀୟ ମଣିଷ ଯେତେବେଳେ ଯାଏ ଜାଣୁଥାଏ ଯେ ତା' ବିରୁଦ୍ଧରେ ଅନେକ ଲୋକ ସଂଗ୍ରାମ କରିବାକୁ କି ଶତ୍ରୁତା ଆଚରଣ କରିବାକୁ ଅଛନ୍ତି ସେତେବେଳେ ଅତି ବିପନ୍ନ ଓ ହଇରାଣ ହେଉଥିଲେ ମଧ ସେ ନିଜ ଭିତରୁ ପ୍ରେରଣା ପାଉଥାଏ । ଯେତେବେଳେ ସେ ଅନୁଭବ କରେ ତା' ବିଷୟରେ କାହାରି ଭୃକ୍ଷେପ ନାହିଁ ସେତେବେଳେ ସେ ହତାଶ ହୋଇ ପଡ଼େ । ନିଜର ବ୍ୟକ୍ତିତ୍ୱ ବି ସେ ଅନୁଭବ କରିପାରେ ନାହିଁ । ନିଜକୁ ଅତି ମୂଲ୍ୟହୀନ ମନେ

କରେ । ମୋର ଅବସ୍ଥା ଠିକ୍ ସେହିପରି । ଖୁବ୍ ଅନୁତପ୍ତ ଓ ସଂକୁଚିତ ହୋଇ ମୁଁ ଥାଏ । ମୋର ମଫସଲିଆଢଙ୍ଗ ମଧ୍ୟ ପୂରାମାତ୍ରାରେ ଥାଏ ।

ଜଣେ 'ପତ୍ର-ବନ୍ଧୁ'ଙ୍କ ସହିତ ମୋର ଦେଖାହେଲା । ଏହା ପୂର୍ବରୁ ତାଙ୍କ ସହିତ ଚିଠି ପତ୍ରରେ ସମ୍ବନ୍ଧ ସ୍ଥାପିତ ହୋଇଥିଲେ ମଧ୍ୟ ସାକ୍ଷାତରେ କେବେ ସେ ମୋତେ ଦେଖି ନଥିଲେ କିମ୍ବା ମୁଁ ତାଙ୍କୁ ଦେଖି ନଥିଲି । ସେଠାକୁ ସେ ଆମର ପରିଚାଳିକା ରୂପେ କ୍ଲାସ ନେବାକୁ, ଶିବିର ପରିଚାଳନା କରିବାକୁ ଆସିଥାନ୍ତି । ସେ ଜଣେ ଝିଅ ହୋଇଥିଲେ ମଧ୍ୟ ତାଙ୍କ ସ୍ଥାନ ସାଧାରଣ କ୍ଷେତ୍ରରେ ବହୁତ ଉପରେ । ସେ ଦୁଇ ତିନିଜଣ ଅନୁଗାମୀଙ୍କ ଗହଣରେ ଆସି ଶିବିର ମଧ୍ୟରେ ବୁଲି ଯାଉଥିଲେ ଓ ଆମ ଶିବିରାର୍ଥୀମାନଙ୍କୁ ନିରୀକ୍ଷଣ କରୁଥିଲେ ପରିଦର୍ଶନ କରିବା ଢଙ୍ଗରେ । ମୁଁ ତାଙ୍କ ନାଁ ଶୁଣି ଉଠିପଡ଼ିଲି । ବୋକାଙ୍କ ପରି ତାଙ୍କ ହାତ ଧରି ପକାଇ ଉଚ୍ଛ୍ୱସିତ ଆଗ୍ରହରେ କହି ପକାଇଲି, 'ମୋତେ ଚିହ୍ନି ପାରୁଛ ? ମୁଁ ଗୋଦାବରୀ' । ତାଙ୍କୁ ବହୁତ ଅଡୁଆ ଲାଗିଥିବ । ସେ ମୋଠୁଁ ଝଟ୍‌କିନା ହାତ ଛଡ଼ାଇ ନେଇ ଖୁବ୍ ଶୀଘ୍ର 'ହଁ' ବୋଲି କହି କ୍ଷିପ୍ର ଗତିରେ ଆଗକୁ ଚାଲିଗଲେ । ତାଙ୍କୁ ମୋର ବ୍ୟବହାର ଅତି ଅମାର୍ଜିତ ପରି ବୋଧ ହେବା କଥା ତାଙ୍କ ମୁହଁର ଭାବରୁ ମୁଁ ଅନୁମାନ କଲି । ଏଥିପାଇଁ ନିଜକୁ ଆହୁରି ବେଶି ଅପ୍ରତିଭ ଲାଗିଲା ଓ ଅନାଡ଼ି ପରି ବୋଧ ହେଲା । ମନେ ମନେ ସଙ୍କୋଚ ଆହୁରି ବଢ଼ିଗଲା । ମନରେ ଭାବନା ଆସୁଥାଏ 'ଆପଣା ହସ୍ତେ ଜିହ୍ୱା ଛେଦି କେ ଅଛି ତାର ପ୍ରତିବାଦୀ ।' ପାଟିରୁ ଥରେ କଥା ଖସିଗଲେ ଆଉ ଫେରି ଆସେ ନାହିଁ । ସମାଜ ସହିତ, ବାପାଙ୍କ ସହିତ ବିଦ୍ରୋହୀ ହୋଇ ଆସି ଏତିକି ସମସ୍ୟାରେ ଦବିଯାଇ ପଛକୁ ଲେଉଟିବାକୁ ବସିଲେ ବି ବାଟ ନାହିଁ କି ସ୍ଥାନ ନାହିଁ । ସୁତରାଂ ମନ ଯେତେ ଦବି ଯାଉଥିଲେ ବି ଦୃଢ଼ ହୋଇ ଆଗେଇବାକୁ ପଡ଼ିବ- ଏକଥା ନିଶ୍ଚିତ ବାସ୍ତବ ମୋ ପକ୍ଷରେ ।

ମନ ଅତି ମ୍ରିୟମାଣ ଥାଏ । ଯନ୍ତ୍ରଚାଳିତ ପରି ଶିବିରର ବିଭିନ୍ନ କାର୍ଯ୍ୟକ୍ରମରେ ଭାଗ ନେଉଥାଏ । ସେ ପର୍ଯ୍ୟନ୍ତ କୌଣସି କ୍ଲାସ ବ୍ୟବସ୍ଥିତ ଭାବରେ ଚାଲୁହୋଇ ନଥାଏ । ଖାଲି ଜାତୀୟ ସଙ୍ଗୀତ ଓ ପ୍ରାର୍ଥନା ସଙ୍ଗୀତ, ପତାକା ଉତ୍ତୋଳନ ଓ ଅବତରଣ ବନ୍ଦନା (ହିନ୍ଦୀରେ 'ଝଣ୍ଡା ଉଚା ରହେ ହମାରା' ଇତ୍ୟାଦି) ନିଜେ ନିଜେ ଟିପି ନେଇ ଶିକ୍ଷାର୍ଥିନୀମାନେ ବସି ଶିଖୁଥାନ୍ତି ।

ଦୁଇଦିନ ପରେ ସେଦିନ ସଞ୍ଜବେଳେ ମୁଁ ମୋର ସିଟ୍ ପାଖରେ ବସିଥିବାବେଳେ କିଏ ଜଣେ ଆସି କହିଲେ, 'ତୁମକୁ ମା' ଡାକୁଛନ୍ତି ।' ମୁଁ ବାହାରକୁ ଗଲି । ଯାଇ ଦେଖିଲି ମା'; ପୂଜ୍ୟା ରମାଦେବୀ ଓ ଜଣେ ଦାଢ଼ି ରଖିଥିବା ପ୍ରଶାନ୍ତ ଆନନ୍ଦମୟ ବ୍ୟକ୍ତି ଠିଆ ହୋଇଛନ୍ତି । ଅନେକ ପରିଚିତା ଶିକ୍ଷାର୍ଥିନୀ ଓ ଆମ ପରିଚାଳିକାମାନଙ୍କ ମଧ୍ୟରୁ କେତେଜଣ

ମଧ୍ୟ ସେ ଦୁହିଁଙ୍କ ପାଖରେ ଠିଆ ହୋଇଥାନ୍ତି । ମା' କହିଲେ, ତମକୁ ବାପା (ପୂଜ୍ୟ ଗୋପବନ୍ଧୁ ଚୌଧୁରୀ) ଡାକୁଛନ୍ତି । ତାଙ୍କୁ କହିଲେ, 'ହେଇ ଗୋଦାବରୀ' । ମୁଁ ତାଙ୍କୁ ଓଳିଗି ହେଲି । ସେ ମୋତେ ଅତି ସ୍ନେହ ଆଦରରେ ପାଖକୁ ଟାଣିନେଇ ମୁଣ୍ଡରେ ହାତ ମାରି କହିଲେ, 'ଭଲ ବାପା ତ ପାଇଲୁ ଆଉ କ'ଣ ?' ମୋ ଆଖିରୁ ଟପ ଟପ ହୋଇ ଲୁହଧାର ବୋହିଗଲା । ଜ୍ୟେଷ୍ଠ ମାସିଆ ଅସହ୍ୟ ଗ୍ରୀଷ୍ମର ଗୁମ୍ ସୁମ୍ ପାଗରେ ଟିକିଏ ଥଣ୍ଡା ପବନ ବୋହିଲେ ଯେପରି ବରଷା ବିନ୍ଦୁ ଆକାଶରୁ ଖସିପଡ଼େ, ଭୂଇଁ ଓ ବାୟୁମଣ୍ଡଳ ଶୀତଳ ହୋଇଯାଏ ମୋତେ ସେପରି ଲାଗିଲା । ମନର ସବୁ ବିଫଳତା ଅପସରି ଯାଇ ମଲାଗଛରେ ପତ୍ର ପଲ୍ଲବିତ ହେଲାପରି ମୋତେ ଲାଗିଲା । ମୋର ମୃତଆତ୍ମା ଯେପରି ଜାଗ୍ରତ ହୋଇ ଉଠିଲା ସେ ପବିତ୍ର ଅନାବିଳ ସ୍ନେହର ଶୀତଳ ସ୍ପର୍ଶରେ । ମୋ ବୋଉର ମୃତ୍ୟୁ ପରେ ମୁଁ ଆଉ କାହାର ସ୍ନେହ ଏତେ ଘନିଷ୍ଠ ଭାବରେ ଅନୁଭବ କରିନଥିଲି । ମନରୁ ସବୁ କଳୁଷ ଦୂର ହୋଇଗଲା । ସେହିଦିନ ଠାରୁ ସେହି ପୁଣ୍ୟମୟ ଆତ୍ମା ସାଙ୍ଗରେ ଏହି ଅକିଞ୍ଚନର ଆତ୍ମାର ସମ୍ବନ୍ଧ ଯୁଗ ଯୁଗାନ୍ତର ବ୍ୟାପି ଓ ଜନ୍ମ ଜନ୍ମାନ୍ତରର ବୋଲି ମୋର ହୃଦ୍‌ବୋଧ ହୋଇଛି । ତାଙ୍କର ନିଜ ଦେହଜାକନ୍ୟା ହୋଇ ଜନ୍ମନେବାର ତପସ୍ୟା ମୋର ନଥିଲା କିନ୍ତୁ ତାଙ୍କର ପବିତ୍ର ଅନାବିଳ ସ୍ନେହର ଉପରେ ମୋର ଅଂଶର ପରିମାଣ ବହୁତ ଥିଲା ପରି ମୁଁ ଜୀବନଯାକ ଅନୁଭବ କରିଛି ଓ ବଞ୍ଚିଥିବା ପର୍ଯ୍ୟନ୍ତ ସେହି ପୁଣ୍ୟ ସ୍ମୃତି ମୋର ସମ୍ବଳ ।



# ପ୍ରାକ୍ ସ୍ୱାଧୀନତା ଯୁଗରୁ ଭାରତୀୟ ନାରୀ
## (ସାମାଜିକ ଅବସ୍ଥା ଓ ସ୍ୱାଧୀନତା ପାଇଁ ତା'ର ଅବଦାନ)

ଗୋଦାବରୀ ଦେବୀ

ଆଦି ଯୁଗରେ ହିଁ ଭାରତୀୟ ନାରୀ, ସମାଜରେ ସମ୍ମାନର ଶ୍ରେଷ୍ଠ ସ୍ଥାନରେ ଅଧିଷ୍ଠିତ ଥିଲା । ମାନବ ସଭ୍ୟତାର ଉନ୍ମେଷ କାଳରୁ ମାତୃଶକ୍ତିକୁ ମହା-ଜାଗତିକ ଶକ୍ତିର ଆଧାର ଭାବେ ଆର୍ଯ୍ୟ ଋଷିଗଣ ଉପଲବ୍ଧି କରି ପୂଜା କରିବାରେ ବ୍ରତୀ ହୋଇଥିଲେ । ସେମାନେ ଶକ୍ତିର ଆଧାର ରୂପେ ଦୁର୍ଗା, ଜ୍ଞାନର ଆଧାର ରୂପେ ସରସ୍ୱତୀ ଓ ଆହାର ଏବଂ ଧନର ଆଧାର ରୂପେ ମହାଲକ୍ଷ୍ମୀଙ୍କୁ ପୂଜା ଆରାଧନା କରି ମାନବ ସଭ୍ୟତା ଓ ସାମାଜିକ ଚେତନାର ମୂଳଦୁଆ ସ୍ଥାପନ କରି ଆସିଛନ୍ତି । ସମୂହ ସଙ୍କଟବେଳେ ଦୁର୍ଗତି-ନାଶିନୀ ମା' ଦୁର୍ଗାଙ୍କର ବାହୁଛାୟା ତଳେ ଆଶ୍ରୟ ପ୍ରାର୍ଥନା କରି ଦେବ-ଦାନବମାନେ ଦୁର୍ଦ୍ଧାନ୍ତ ଆସୁରିକ ଅତ୍ୟାଚାରରୁ ମୁକ୍ତ ହୋଇଛନ୍ତି । ଆଜି ମଧ୍ୟ ମା' ଦୁର୍ଗାଙ୍କର ଦୁଷ୍ଟଦଳିନୀ ଚଣ୍ଡୀମୂର୍ତ୍ତିର ଉପାସନା ସାରା ଦେଶରେ ପ୍ରଚଳିତ । ହିନ୍ଦୁ ସଭ୍ୟତା ପୃଥିବୀ ପୃଷ୍ଠରେ ଜୀବିତ ଥିବାଯାଏଁ ଏହାର ଉଜ୍ଜ୍ୱଳ ଗୌରବକୁ କେହି ଲୋପ କରିପାରିବେ ନାହିଁ । ମାତୃଜାତିକୁ ଏପରି ଶ୍ରେଷ୍ଠ ସ୍ଥାନରେ ରଖି ପୂଜା ଦେବା ପୃଥିବୀର ଯେ କୌଣସି ଧର୍ମରେ ଆଦୃତ ହେବା ବାଞ୍ଛନୀୟ । ଆଜି ଅବଶ୍ୟ ବିଜ୍ଞାନ ବଳରେ ମଣିଷ ସେହି ମହାନ୍ ଶକ୍ତିର ଅଂଶ ବିଶେଷକୁ ଆହରଣ କରି ମଣିଷ ଅସାଧ ସାଧନ କରିବାକୁ ସକ୍ଷମ ହୋଇପାରିଛି । କିନ୍ତୁ ସେ ଶକ୍ତିକୁ ଅସ୍ୱୀକାର କରିବା ବା ତା'ର ବିଲୋପ ସାଧନ କରିବାର ଶକ୍ତି ତା'ର ନାହିଁ ବରଂ ସେହି ମହାଶକ୍ତିର ବିନିଯୋଗ କରି ମାନବ ନିଜର ଧ୍ୱଂସ ସାଧନର ପଥ ସୁଗମ କରିବାରେ ଲାଗିଛି । ଯଥା:- ପରମାଣୁ ଶକ୍ତିର ଧ୍ୱଂସାତ୍ମକ ପ୍ରୟୋଗର ସାଂଘାତିକ ଚେଷ୍ଟା । ଦ୍ୱିତୀୟ ମହାଶକ୍ତି ହେଉଛି ଜ୍ଞାନ, ସରସ୍ୱତୀଦେବୀଙ୍କର ଚେତନାଦାୟିନୀ ମାଙ୍ଗଳିକ ଶକ୍ତି । ତାକୁ ଅଗ୍ରାହ୍ୟ କରି ବିବେକର ଅନୁମୋଦନ ନ ମାନି ଯେ ଶକ୍ତିର ଅପଚୟକରେ, ସେ ଧ୍ୱଂସର ଶିକାର ହେବା ହିଁ ସୁନିଶ୍ଚିତ । ତାହା ବ୍ୟକ୍ତି ହେଉ ବା ସମଷ୍ଟି ସ୍ତରରେ ହେଉ । ତୃତୀୟ ମହାଶକ୍ତି ହେଉଛି ଜୀବନ ଧାରଣର ଉପାଦାନର ଉତ୍ପାଦିକା ଶକ୍ତି । ସେ ଶକ୍ତିର ପ୍ରତୀକ ହେଉଛନ୍ତି ବିଷ୍ଣୁପତ୍ନୀ ମହାଲକ୍ଷ୍ମୀ ଭୂମାତା ।

ସେହି ଭୂମିମାତା ବା ପୃଥିବୀମାତାଙ୍କ ବିନା ଉଦ୍ଭିଦ ଜଗତ ଓ ପ୍ରାଣୀ ଜଗତ କାହାରି ଅସ୍ତିତ୍ୱ ସମ୍ଭବ ନୁହେଁ । ସେହି ଜୀବନ ଧାରଣର ଆଧାର, ଆହାର ସାମଗ୍ରୀକୁ ସ୍ୱାର୍ଥାନ୍ୱେଷୀ ହୀନ ମାନବମାନେ ଅପଚୟ, ଅପମିଶ୍ରଣ ଦ୍ୱାରା ଦୂଷିତ କରିବାରୁ ସ୍ୱାସ୍ଥ୍ୟ ଓ ସମୃଦ୍ଧିର ଧ୍ୱଂସ ସାଧନ କରିବାରେ ଆଜିର ମଣିଷ ସାମୂହିକଭାବେ ଦାୟୀ ହେଉଛି । ଏ ତ ଗଲା ମାତୃରୂପିଣୀ ଶକ୍ତି ତ୍ରିଶକ୍ତିଙ୍କର କଲ୍ୟାଣମୟ ରୂପ ।

ଐତିହାସିକ ଯୁଗରେ ବି ଭାରତୀୟ ନାରୀ ବୁଦ୍ଧି, ବିଦ୍ୟା, ଜ୍ଞାନଚର୍ଚ୍ଚା ବଳରେ ସମାଜରେ ଶ୍ରେଷ୍ଠ ସ୍ଥାନ ଲାଭ କରିଥିଲା । ବିଦୂଷୀ ମୈତ୍ରେୟୀ, ସତୀ ଅନସୂୟା, ଖନା, ଲୀଳାବତୀ, ସାବିତ୍ରୀ, ଦ୍ରୌପଦୀ, ଦେବହୂତୀ, ରାଣୀ ଦୁର୍ଗାବତୀ, ଅହଲ୍ୟାବାଈ, ଝାନ୍ସୀରାଣୀ ଲକ୍ଷ୍ମୀବାଈ, ଚାନ୍ଦବିବି ପ୍ରଭୃତି ବୀରାଙ୍ଗନା ଓ ପଦ୍ମିନୀ ପ୍ରଭୃତି  ବୀରାମାନେ ଚିରସ୍ମରଣୀୟା ହୋଇ ରହିଛନ୍ତି ଓ ରହିଥିବେ । ମହାପଣ୍ଡିତ ଶଙ୍କରାଚାର୍ଯ୍ୟଙ୍କୁ ବୁଦ୍ଧିରେ ପରାସ୍ତ କରିଥିବା ମଣ୍ଡନ ମିଶ୍ରଙ୍କ ବୁଦ୍ଧିମତୀ ସ୍ତ୍ରୀଙ୍କ ନାମ ମଧ୍ୟ ଉଲ୍ଲେଖଯୋଗ୍ୟ । କାଳକ୍ରମେ ବୈଦେଶିକ ଅନୁପ୍ରବେଶକାରୀ ଶକ୍ତି ସହ ପୁରୁଷମାନେ ସଂଘର୍ଷରେ ଲିପ୍ତ ରହିବା ଫଳରେ ସମାଜର ଅମୂଲ୍ୟ ସମ୍ପଦ, ନାରୀର ମର୍ଯ୍ୟାଦା ସୁରକ୍ଷିତ ରଖିବା ପାଇଁ ନାରୀମାନଙ୍କୁ ପରଦା ଅନ୍ତରାଳରେ ଘରକୋଣରେ ଲୁଚି ରହିବାକୁ ପଡ଼ିଲା । ଯେଉଁ କର୍ମଜୀବୀ ମହିଳାମାନଙ୍କୁ କାର୍ଯ୍ୟୋପଲକ୍ଷେ ଘର ବାହାରକୁ ଯିବାକୁ ପଡୁଥିଲା ସେମାନେ ସ୍ୱତଃପ୍ରବୃତ୍ତ ହୋଇ ଅସ୍ତ୍ରଶସ୍ତ୍ର ବଦଳରେ ନିଜର ମହତ୍ତ୍ୱ ଓ ଆତ୍ମରକ୍ଷା ପାଇଁ ଏପରି ଆଭୂଷଣମାନଙ୍କୁ ଧାରଣ କରୁଥିଲେ, ଯେଉଁଥିରେ ଦୁର୍ବୃତ୍ତକୁ ଆଘାତ କରି ଆତ୍ମରକ୍ଷା କରିହେବ । ଯଥା ମୋଟା ମୋଟା କଂସାପିଉଳରେ ଖଡୁ, ଗଣ୍ଡିଗଣ୍ଡିଆ ଓ କଣ୍ଟା କଣ୍ଟା କଉଡ଼ି ଓ ଦାନ୍ତୁଆ କତୁରୀ (ସମ୍ବଲପୁର ଅଞ୍ଚଳରେ ଏହାକୁ 'କତୁରୀଆ ବନ୍ଧିଆ' ବୋଲି କହନ୍ତି) । ଗୁଡ଼ିଆଘର ବୋହୂ, ତେଲିଘର ବୋହୂ, ଗଉଡ଼ଘର ବୋହୂ ଟିକେ ବୟସ୍କା ହେଲେ ନିଜର ସାମଗ୍ରୀ ବିକ୍ରୀ କରିବାକୁ ଗାଁକୁ ଯିବା ଆବଶ୍ୟକ ପଡୁଥିଲା । ନିମ୍ନସ୍ତରରେଥିବା କର୍ମଜୀବୀ ମହିଳାମାନଙ୍କୁ ମଧ୍ୟ ହାଟ-ବାଟକୁ ଯିବାକୁ ପଡୁଥିଲା । ମୁଁ ଏକଥା ପିଲାଦିନେ ଦେଖିଛି । ଜଣେ ଗଉଡୁଣୀ ବୁଢ଼ୀ ତାକୁ ଆମେ ହରିଆ-ବୋଉ ମା' ବୋଲି ଡାକୁ । ସେଇ ଗଉଡୁଣୀ ବୁଢ଼ୀ ନଈ ସେପାରି ଗାଁରୁ ଦହି, ଦୁଧ, ଛେନା, ଲହୁଣୀର ପସରା ମୁଣ୍ଡାଇ ଆସେ । ବନ୍ଧ ଉପରେ ଧାଡ଼ି ଧାଡ଼ି ଝିଅ, ବୋହୂ, ବୁଢ଼ୀ ମଧ୍ୟ ଆସନ୍ତି । ଆମ ଗାଁରେ ଘରେ ଘରେ ନାଳୁଆ ଦୁଧ-ଦହି ପ୍ରଭୃତି ବିକ୍ରିକରି ସେମାନେ ନିରାପଦରେ ଘରକୁ ଫେରୁଥିଲେ । ସେମାନଙ୍କର ସ୍ନେହ ମମତା ନିଜର ଆତ୍ମୀୟମାନଙ୍କ ଠାରୁ ଊଣା ନୁହେଁ । ସେତେବେଳର ଦାମ୍ କଥା ବି ଟିକେ ଲେଖି ଦେଉଛି,  ଚମକି  ପଡ଼ିବେ ନାହିଁ । ଦୁଧ ସେର ୪ ପଇସା । ଟଙ୍କାରେ ୨୪ ପଳିରେ ୮ ଛଟାକି ଘିଅ, ମାନେ ଏବେକାର ଲିଟର ମାପରେ ପ୍ରାୟ ୧ ଲିଟର ହେବ । ଆମେ ପିଲାମାନେ ଖାଇ ବସିଥିବାର ଦେଖିଲେ ସେ ତା'ର ପାଚି ଯାଇଥିବା

ମାଟି ଛଟାକିରୁ ମାଗଣାରେ ଢାଳି ଦେଇ ଯିବ । କାହିଁ ଗଲା ସେ ଯୁଗ ମୋର ବୋଉକୁ ସେ 'ଦାସଝିଅ ବୋଉ' ଡାକେ । କାରଣ ସେତେବେଳେ ଶାଶୁଶ୍ରେଣୀର ବୟସ୍କାମାନେ ବୋହୂମାନଙ୍କୁ ବାପାଙ୍କମାନଙ୍କ ସଂଜ୍ଞାଧରି ଡାକୁଥିଲେ । ଏହା ୧୯୨୪-୨୫ଠାରୁ ୧୯୩୮-୪୦ ପର୍ଯ୍ୟନ୍ତ ସମୟର । ମୋର ପିଲାଦିନର ଗାଁର ସାମାଜିକ ଅବସ୍ଥାରେ ଜାତିଗତ ପାର୍ଥକ୍ୟ ଗୌରବରେ ସମସ୍ତେ ଗୌରବାନ୍ୱିତ ଥିଲେ । କିନ୍ତୁ ଉଚ୍ଚଜାତି ପାଟକଙ୍କ ଠାରୁ କୌଣସି ପାଟକର ସମ୍ମାନ ଆଦୌ ଊଣା ନଥିଲା । ହରିଆ ମା' କହେ, ବ୍ରାହ୍ମଣ, ନ ଗାଧୋଇଥିଲେ ଠାକୁର ତା' ହାତରୁ ପାଣି ଛୁଇଁବେ ନାହିଁ । ଆମେ ଅଗାଧୁଆ ସର, ଲବଣୀଦେଲେ ଠାକୁର ଖୁସିହୋଇ ଖାଇଯାଆନ୍ତି । କାହିଁ ଆଜି ସେ ସାମାଜିକ ସମ୍ପର୍କ ଓ ବିଶ୍ୱାସ ? ଯୋଜନା ପରେ ଯୋଜନା ବିତିଯାଉଥିଲେ ବି ଦୁଧ-ଦହିର ଦୁଷ୍ପ୍ରାପ୍ୟତା ବଢ଼ି ଚାଲିଛି । କୌଣସି ଜିନିଷ ଖାଣ୍ଟି ବୋଲି ଧରି ନେବାକୁ ଉପାୟ ନାହିଁ । ବେଶିଦୂର ନୁହଁ, ବ୍ରିଟିଶ ଶାସନ କାଳରେ ବି ଗାଁ-ଗହଳରେ ଏ ଅବସ୍ଥାଥିଲା । କଥା ପ୍ରସଙ୍ଗରେ ମୁଁ ତତ୍‌କାଳୀନ ସାମାଜିକ ଅବସ୍ଥା କଥା ବର୍ଣ୍ଣନା କରିଗଲି ।

ଥରେ ଥରେ ଆମେ ପଚାରୁ, ''ହରିଆବୋଉ ମାଆ ! ତୁ କାହିଁକି ଏତେ ସେର ସେର ଓଜନର କଂସା ପିତଳ ଖଡୁ ପିନ୍ଧିଛୁ ?'' ସିଏ କହେ ''ତୁ କ'ଣ ଜାଣିନୁ ନାତୁଣୀ, ଆମେ ପସରା ମୁଣ୍ଡେଇ ଗାଁକୁ ବିକିବାକୁ ଗଲାବେଳେ ଯଦି କେହି ଅଜ୍ଞାଇଣା, ଝାଡ଼ା ବାନ୍ତିଆ ଆମକୁ ଅପମାନିତ କରିବ କି ଆମ ସାଙ୍ଗେ ଲାଗିବ ଏକା ଖଡୁମୁଥାକେ ତା'ର ମୁଣ୍ଡ ଫଟାଇଦେବୁ । ହାତର କଟୁରୀ ଓ କଣ୍ଡା ପଇଥିରେ ମୁଣ୍ଡ କଣାକରିଦେବୁ ।'' ତା'ପରେ ବାଇଶ ମାହାଲ ଭାଇ ଏକାଠି ହୋଇ ପାଟକ ସଭା ବସାଇ ତାକୁ ବାସନ୍ଦ କରିଦେବେ । ଯେତେ ଉଚ୍ଚ ଜାତି ହେଉପଛେ ସେ ସମାଜରେ ଚଳି ପାରିବ ନାହିଁ । କାହିଁ ଆଜି ସେ ସାମାଜିକ ବ୍ୟବସ୍ଥା ? ଦିନ ଦ୍ୱିପ୍ରହରେ ବିଚ୍ ରାଜରାସ୍ତାରେ ଭଦ୍ର ଢଙ୍ଗରେ ଚାଲିଯାଉଥିବା ଝିଅମାନଙ୍କୁ ବିଦ୍ରୂପ ଓ ଅଶ୍ଳୀଳ ଇଙ୍ଗିତ କରୁଥିବା ଘଟଣା ଦେଖିଥିଲେ ବି ଭଦ୍ରଲୋକମାନେ ମୁହଁ ଆଡ଼େଇ ଚାଲିଯାଉଥିବା ନିତ୍ୟନୈମିତ୍ତିକ ଘଟଣା ।

ବିଦେଶୀ ବିଧର୍ମୀମାନଙ୍କ ଆକ୍ରମଣ କାଳରେ ସତୀଦାହ ପ୍ରଥାର ପ୍ରଚଳନ ହୋଇଥିବାର ଅନୁମାନ ହୁଏ । ଅଳ୍ପ ବୟସର ସୁନ୍ଦରୀ ଝିଅ ବୋହୂ ବିଧବା ହୋଇଗଲେ ତା'ର ଇଜ୍ଜତ, ମହତ ବିପନ୍ନହେବା ଠାରୁ ବରଂ ସେମାନଙ୍କୁ ଜୀବନ୍ତ ପୋଡ଼ିଦେଇ ସତୀହେବାକୁ ଦିଆଯାଉ ବୋଲି ସମାଜ ଉଚିତ ମଣୁଥିଲା । ଧର୍ମବିଦ୍ୱେଷୀ ଦୁର୍ବୃତ୍ତଙ୍କ ହାତରୁ ତାକୁ ରକ୍ଷାକରିବାର କାହାରି ସାହସ ଅଣ୍ଟୁନଥିଲା । ଭକ୍ତକବି ସାଲବେଗ ଜଣେ ଧର୍ମପରାୟଣା ବିଧବାର ସନ୍ତାନ । ତାଙ୍କ ମାଆ ମୋଗଲ ସାମ୍ରାଜ୍ୟର ସୁବେଦାର ହାତରେ ବନ୍ଦୀହୋଇ ଲାଞ୍ଛିତା ଓ ଧର୍ଷିତାହୋଇ ବଞ୍ଚିରହି ଯବନ ସାଲବେଗଙ୍କର ମା' ହେବାକୁ ବାଧ ହୋଇଥିଲେ ।

ତାଙ୍କର ପୂର୍ବ ଧର୍ମଭାବ ଓ ଜଗନ୍ନାଥଙ୍କ ଠାରେ ଅଟଳ ଭକ୍ତିର ଭଗ୍ନ ସାଲବେଗଙ୍କ ଠାରେ ପ୍ରତିଫଳିତ ହେଲା । ଯଦିଓ ପଣ୍ଡୁଜାୟା ମାଦ୍ରୀଙ୍କ କାହାଣୀରୁ ପୁରାଣ ଯୁଗର କାହାଣୀରେ ସ୍ୱାମୀ ସହ ସ୍ୱେଚ୍ଛାରେ ସହମୃତାହେବାର ପ୍ରଥା ଥିଲା ବୋଲି ଜାଣିବାକୁ ପାଉଁ ତଥାପି ବାଧବାଧକତାରେ ସତୀଦାହ କଥା କେଉଁଠି ଶୁଣିବାକୁ ମିଳେନି ।

ସତୀ ସୁଲକ୍ଷଣୀ ରାଜପୁତ୍ ରାଣୀ ପଦ୍ମିନୀଙ୍କସହ ଶହ ଶହ ବୀରଙ୍କର ବିଧବା ପତ୍ନୀ ଓ ଅନ୍ୟ ପୁରାଙ୍ଗନାମାନେ ଶତ୍ରୁ ହାତରେ ଲାଞ୍ଛିତା ହେବା ଭୟରେ ବିରାଟ ଅଗ୍ନିକୁଣ୍ଡରେ ଝାସଦେଇ ଜହର ବ୍ରତ ଅବଲମ୍ବନ କରିଥିଲେ । ପୃଥ୍ୱୀରାଜଙ୍କ ରାଣୀ ସଂଯୁକ୍ତା ମଧ ସେହି କାରଣରୁ ସ୍ୱାମୀଙ୍କ ଚିତାନଳରେ ଆତ୍ମାହୁତି ଦେଇଥିଲେ । ଅବଶ୍ୟ ପରବର୍ତ୍ତୀ ବ୍ରିଟିଶଯୁଗରେ ହିନ୍ଦୁଧର୍ମର କୁସଂସ୍କାର ଭାବେ ଏହା ପରିଗଣିତ ହୋଇ ତାହାର ବିଲୋପସାଧନ ହେଲା । ଆଜି ଭାରତୀୟ ନାରୀ ବହୁ ସଂଖ୍ୟାରେ ନିରୂପାୟା ହୋଇ ଧର୍ଷିତା ହେଉଛନ୍ତି । ତାଙ୍କର ସଂଖ୍ୟା ଓ ବିବରଣୀ କେବଳ ସାମ୍ବାଦିକମାନଙ୍କ ଦୟାରୁ ଦେଖିବାକୁ ପାଉଁ । କିନ୍ତୁ ଦୋଷୀ କିଭଳି ଭାବରେ ଦଣ୍ଡିତହେଲା କିଛି ଜାଣିପାରୁନା । ଅନେକ ତ ପ୍ରମାଣ ଅଭାବରୁ ନିର୍ଦ୍ଦୋଷରେ ଖଲାସହୋଇ ସଗର୍ବରେ ବାଟ ଚାଲନ୍ତି । ଯିଏ ବି ପ୍ରମାଣିତଭାବେ ଦଣ୍ଡିତ ହୁଅନ୍ତି ଅତି ବେଶୀ ହେଲେ ତିନିମାସ ବା ଛଅମାସ ସଜାଭୋଗି ଖଲାସ ହୁଅନ୍ତି । ବିଚାର ବିଳମ୍ବଯୋଗୁଁ ବହୁ ଅପରାଧୀ ଖଲାସ ପାଇଯା'ନ୍ତି ।

ବର୍ତ୍ତମାନ ରାଜନୈତିକ ମୁରବିମାନଙ୍କର କି ପ୍ରଶାସନିକ ମୁରବିମାନଙ୍କର କାହାରି ମନକୁ ପ୍ରଶ୍ନ ଉଠେନାହିଁ ଯେକୌଣସି ସଚେତନା ନାରୀ ନିଜକୁ ଧର୍ଷିତା କହି କୋର୍ଟ୍‌ର ଆଶ୍ରୟ ନେବ । ଶ୍ଳାଘା ମଣିବା ଏତେ ଶସ୍ତା ବ୍ୟାପାର ନୁହେଁ । କାରଣ ତାକୁଇ ସମାଜରେ ଘୃଣାର ପାତ୍ର ହେବାକୁ ପଡ଼େ । ଜଣେ ନାରୀ ଧର୍ଷିତାହେବାମାନେ ତା'ର ଇହକାଳ ଓ ପରକାଳ ଧ୍ୱଂସହେବା । ବଞ୍ଚି ନରହି ଜୀବନ ସାଙ୍ଗ କରିଦେବା ତା'ର ନିଜର କର୍ତ୍ତବ୍ୟ ବୋଲି ତାକୁ ଜଣା । ତେଣୁ ଧର୍ଷିତା ନାରୀର କୁଳକୁଟୁମ୍ବଙ୍କୁ ବି ଲାଜ ଓ ଗ୍ଲାନିରେ ସଢ଼ିବାକୁ ପଡ଼େ ।

କାହିଁକି ଜଣେ ନାରୀଧର୍ଷଣକାରୀ ଦୁର୍ବୃତ୍ତକୁ ଜୀବନଦଣ୍ଡ ଦିଆନଯିବ ? ଏ ପ୍ରଶ୍ନର ଉତ୍ତର ମାନ୍ୟବର ବିଚାରପତିମାନଙ୍କ ସମ୍ମୁଖରେ ଓ ଶାସନ ଶକ୍ତି ଆଗରେ ଉତ୍‌ଥାପନ କରିବା ନାରୀ ପ୍ରଗତିପରାୟଣା ନେତ୍ରୀମାନଙ୍କର କର୍ତ୍ତବ୍ୟ ନୁହେଁ କି ? ସେ ଦିଗରେ କ'ଣ କରାଯାଉଛି ଜାଣିବାକୁ ଆମ୍ଭମାନଙ୍କର ଆଗ୍ରହ ହେବା ସ୍ୱାଭାବିକ । ଏ ଧରଣର ଦୁର୍ନୀତି ଓଡ଼ିଶାରେ ସଂଖ୍ୟାଗରିଷ୍ଠ ବୋଲି ବରାବର ସମ୍ବାଦପତ୍ରରେ ଆଲୋଚନା ହେଉଛି । ତା'ଛଡ଼ା ଯେଉଁ ଯୁବତୀମାନଙ୍କୁ ଭୁଲେଇ ଭାଲେଇ ବେଶ୍ୟାଳୟରେ ବିକ୍ରିକରି ଦିଆଯାଉଛି ସେମାନଙ୍କପାଇଁ ବ୍ୟବସ୍ଥା ନାରୀସଂଘ ଜରିଆରେ ହୋଇପାରିବ, ତାହା ବିଚାର କରିବାର କଥା ।

ଆଇନ୍‌ଦ୍ୱାରା ଯୌତୁକ ପ୍ରଥାର ବିଲୋପ ଅସମ୍ଭବ । ତାହା ଯଦି ଭଦ୍ର ନାଗରିକ ବରର ବାପା ମା' ଉପଲବ୍ଧି ନକରନ୍ତି, ସ୍ୱୟଂ ବିଷ୍ଣୁ ବି ଯୌତୁକ ପ୍ରଥା ଉଠାଇପାରିବେ ନାହିଁ । ଲୋକଙ୍କ ହାତରେ ସହଜ ସୁବିଧା ଧନ ଏତେ ଠୁଳ ହୋଇପାରୁଛି ଯେ କନ୍ୟାପିତା ମାତାମାନେ ଆପଣାଆଡୁ ନିଲାମ ଡାକିବାକୁ ଗୋପନରେ ବରଘରେ ପହଞ୍ଚୁଛନ୍ତି । ଆଜିର ଭୋଗ ଯୁଗରେ ଲୋଭ ସମ୍ଭାଳିବ କେଉଁ ବରକର୍ତ୍ତା ? ବରର ଡିଗ୍ରୀ ଓ ଚାକିରୀର ପାହ୍ୟା ଉପରେ ଦାମ୍ ବଢୁଛି । ଯେଉଁମାନେ ଯୌତୁକ ଦାବୀ ପୂରଣ କରିବାରେ ଅକ୍ଷମ ସେମାନେ ଝିଅ ବାହା ଦେବାରେ ସକ୍ଷମହେବେ ବା କିପରି ? ଝିଅକୁ କୌଣସିମତେ ସର୍ବସ୍ୱା ହୋଇ ବାହା ଦେଇଦେଲେ ବି ବାପାମା'ଙ୍କର ନିଶ୍ଚିନ୍ତ ହେବାର ଆଶା ସୁନିଶ୍ଚିତ ନୁହେଁ । ଶାଶୁଘରେ ନିର୍ଯ୍ୟାତନାଜନିତ ଆତ୍ମହତ୍ୟା ନକରି ଜୀବନ ଧରି ବଞ୍ଚିରହିଥିବା ବଧୂକୁ ଜୀବନ୍ତ ଦଗ୍ଧ ହେବାକୁ ପଡୁଥିବାର ବହୁ ସମ୍ବାଦ ମିଳୁଛି । ଯଦି କେହି ପାଠପଢ଼ି ଉଚ୍ଚ ଶିକ୍ଷିତା ଝିଅ ଚାକିରୀ ପାଇ ଉପାର୍ଜନ କରିପାରୁଥାଏ, ତା'ର ଚାହିଦା ବିବାହ ବଜାରରେ ଆଦୃତ ହୁଏ ସତ ମାତ୍ର ଚାକିରିର କର୍ତ୍ତବ୍ୟ ଓ ଘର ସଂସାର କର୍ତ୍ତବ୍ୟ ପୂରଣ କରିବାପାଇଁ ତାକୁ ବହୁ କଷ୍ଟ ଓ ପରିଶ୍ରମ କରିବାକୁ ପଡ଼ିଥାଏ । ଚାକିରିରେ ଉପରିସ୍ଥ କର୍ମଚାରୀଙ୍କୁ ସେ ସନ୍ତୁଷ୍ଟକରିବା ପାଇଁ ନିଜର ରୁଚି ବିରୁଦ୍ଧରେ ସମ୍ମାନହାନିଜନକ ପରିସ୍ଥିତିରେ ପଡୁଥିବାର ଦୃଷ୍ଟାନ୍ତ ବିରଳ ନୁହେଁ । ଅନେକ ସ୍ଥାନରେ ଦେଖିବାକୁ ମିଳେ ନାରୀମାନେ ହିଁ ନାରୀ ନିର୍ଯ୍ୟାତନାର କାରଣ ହୋଇଥାନ୍ତି । ଶାଶୁ ନଣନ୍ଦଙ୍କର ବୋହୂପ୍ରତି ନିର୍ମମ ବ୍ୟବହାର ଓ ଅବିବେକୀ ବୋହୂମାନଙ୍କର ବୃଦ୍ଧା ଶାଶୁ ବା ଆତ୍ମୀୟାଙ୍କ ପ୍ରତି ଅବହେଳା ଓ ଅବଜ୍ଞା ଭାବ, ଯାହାଯୋଗୁଁ ପରିବାର ଓ ସଂସାର ବିଷମୟ ହୋଇପଡ଼େ । ଏପରି ବହୁ ଘଟଣା ସମାଜରେ ଘଟେ ଓ ଘଟୁଛି । ସାମାଜିକ ଚେତନା, କର୍ତ୍ତବ୍ୟବୋଧ ପରିପକ୍ୱ ହେଲେ ସେହି ବୋହୂମାନଙ୍କର ଓ ଶାଶୁମାନଙ୍କର ଅବିବେକୀପଣିଆ ରୋକି ହୋଇପାରିବା ସମ୍ଭବ ।

ଐତିହାସିକ ଯୁଗରେ ଭାରତୀୟ ନାରୀମାନଙ୍କର ସ୍ଥାନ ମଧ୍ୟ ସମାଜରେ ବହୁ ଉଚ୍ଚରେ ଥିବା ଆଲୋଚନା ହୋଇଛି । ଆମ ଦେଶ ପରାଧୀନ ଥିବା ସମୟରେ ଆମର ଅବସ୍ଥା କିପରି ଥିଲା ତାହା ଏବେ ଅନୁଧ୍ୟାନ କରିବାର କଥା । ବିଧର୍ମୀ ଶକ୍ତିର ଆକ୍ରମଣ ଯୋଗୁଁ ନାରୀମାନଙ୍କୁ କେବଳ ଗୃହ ପରିସୀମା ଭିତରେ କଟାଇବାକୁ ପଡ଼ିବାରୁ ବିଦ୍ୟାଚର୍ଚ୍ଚା ବା ଯୁଦ୍ଧ-ବିଦ୍ୟାରେ ଅଂଶଗ୍ରହଣ କରିବାକୁ ସୁଯୋଗ ଆପେ ଆପେ ଲୋପ ହୋଇଯିବା ସ୍ୱାଭାବିକ ଥିଲା । ଅଳ୍ପ ବୟସରୁ ଝିଅମାନଙ୍କୁ ବାହାଦେଇ କନ୍ୟାଦାୟରୁ ମୁକ୍ତ ହୋଇ ବାପ-ମା' ନିଶ୍ଚନ୍ତ ରହିବାକୁ ଚାହୁଁଥିବାରୁ ଝିଅ ପାଠ ପଢ଼ିବାର କୌଣସି ଆବଶ୍ୟକତା ମଣୁ ନଥିଲେ । ସେତେବେଳକାର ଆମ ଓଡ଼ିଶାର ଝିଅ-ବୋହୂ ସ୍କୁଲ, କଲେଜ ଯାଇ ପାଠ ପଢ଼ିବା ଅସମ୍ଭବ ବ୍ୟାପାର ଥିଲା ।

ତଥାପି ଗାଁ ଗହଳିର ଝିଅ-ବୋହୂମାନେ ନିରକ୍ଷରା ବା ଅଜ୍ଞ ଅବସ୍ଥାରେ ରହୁ ନଥିଲେ । ସାଙ୍ଗ-ସାଥି ଝିଅବୋହୂମାନଙ୍କ ଠାରୁ ବା ଛୋଟ ଛୋଟ ପୁଅ ଆତ୍ମୀୟମାନଙ୍କ ଠାରୁ ବର୍ଣ୍ଣବୋଧ, ଚାଟଶାଳୀପାଠ ପ୍ରଭୃତି ଶିକ୍ଷା କରୁଥିଲେ । ସେ କାଳର ଆଦର୍ଶ ପାଠ୍ୟ-ପୁସ୍ତକରୁ ଲେଖିବା, ପଢ଼ିବା ଓ ହିସାବ କରିବା ଶିକ୍ଷା ପାଇ ପୁରାଣ, ଭାଗବତ, ଛାନ୍ଦ, ଚଉତିଶା ପ୍ରଭୃତି ଅଧ୍ୟୟନ କରି ଓ ମୁଖସ୍ଥ କରି ଏତେ ପରିପକ୍ୱ ଜ୍ଞାନ ଅର୍ଜନ କରିପାରୁଥିଲେ ଯେ ଆଜିକାଲିର ଓଡ଼ିଆ ବିଭାଗର ସ୍ନାତକୋତ୍ତରଧାରୀଙ୍କ ଠାରୁ ଅଧିକ ଜ୍ଞାନର ଅଧିକାରିଣୀ ହୋଇ ପାରୁଥିଲେ । ସୂକ୍ଷ୍ମ କୁଟୀର ଶିଳ୍ପ, ବାଉଁଶ, ତାଳପତ୍ର ଧାନଶିଂସା ପ୍ରଭୃତିରେ ସୁନ୍ଦର ସୁନ୍ଦର ରଙ୍ଗ ବିନ୍ୟାସ କରି ପେଡ଼ି, ଶଙ୍ଖା, ଆସନ ପ୍ରଭୃତି ନାନା ଆବଶ୍ୟକ ଜିନିଷ ଝିଅମାନେ ଏକାଠି ବସି ତିଆରି କରୁଥିଲେ । ବିଭିନ୍ନ ପର୍ବ-ପର୍ବାଣିରେ ଚିତା, ମୁରୁଜ ପ୍ରଭୃତିରେ ଭିନ୍ନ ଭିନ୍ନ ଶୈଳୀର କାରୁଚିତ୍ରମାନଙ୍କରେ ଘରକାନ୍ଥ ଓ ଅଗଣାକୁ ସଜାଉଥିଲେ । ଅନ୍ୟ ରାଜ୍ୟମାନଙ୍କ ଛଡ଼ା ଆମ ଓଡ଼ିଶାର ନାରୀର ତତ୍‌କାଳୀନ କୃତିତ୍ୱ କିଛି କମ୍ ନଥିଲା । ଭକ୍ତିମତୀ କବି ମାଧବୀ ଦାସୀଙ୍କର ସ୍ୱକୃତ ଭଜନାବଳୀ, ବାଙ୍କୀର ରାଣୀ ଶୁକଦେଈ ଓ ଖୋର୍ଦ୍ଧାର ରାଣୀ ରତ୍ନାବତୀଙ୍କର ନିଷ୍ଠାପର ସଂକଳ୍ପ ଓ ବୀରତ୍ୱ ଅବିସ୍ମରଣୀୟ ।

ଇଂରେଜ ଅମଳରେ ସ୍କୁଲ, କଲେଜ ଶିକ୍ଷା ପ୍ରତିଷ୍ଠା ହେବାପରେ ମଧ୍ୟ ଓଡ଼ିଆ ଘରର ଝିଅ ସ୍କୁଲ ଶିକ୍ଷାର ସୁଯୋଗରୁ ବଞ୍ଚିତ ରହୁଥିଲା । ବଡ଼ ବଡ଼ ସହରରେ ଉଚ୍ଚ ଶ୍ରେଣୀର ପରିବାରର କେତେକ ଝିଅଙ୍କୁ ଇଂରେଜ ମେମ୍‌ମାନେ ଘରେ ଆସି ପଢ଼ାଇ ଦେଉଥିଲେ । ଖ୍ରୀଷ୍ଟିୟାନ ଝିଅମାନେ କିଛି ପରିମାଣରେ ସହର ସ୍କୁଲରେ ପାଠପଢ଼ି ଶିକ୍ଷକତା କରିବା ସହରରେ ଚାଲୁହେଲା । ବଙ୍ଗଳା ରାଜ୍ୟରେ ଇଂରେଜ ସରକାରଙ୍କ ଅଧୀନରେ ଯେଉଁ ଅମଲାମାନେ ଚାକିରି କରୁଥିଲେ ସେମାନଙ୍କର ଝିଅମାନେ ସ୍କୁଲ କଲେଜରେ ବହୁସଂଖ୍ୟାରେ ପାଠ ପଢ଼ିବାରେ କିଛି ବାଧା ନଥିବାରୁ ସେମାନେ ବର୍ତ୍ତମାନ ଶିକ୍ଷା କ୍ଷେତ୍ରରେ ଅଗ୍ରଗତି କରିଛନ୍ତି ।

ଝିଅର ବିବାହ, ଯୌତୁକ ଦାବୀ ଓ ଯୌତୁକଜନିତ ନିର୍ଯ୍ୟାତନା ଛଡ଼ା ଆଉ ଗୋଟିଏ ବିଶେଷ ଚିନ୍ତାର ଦିଗ ରହିଛି । କୌଣସି କୌଣସି ସ୍ଥାନରେ ବିବାହର କିଛିକାଳପରେ ସ୍ୱାମୀ-ସ୍ତ୍ରୀଙ୍କ ମଧ୍ୟରେ ମତାନ୍ତର ମନାନ୍ତରରେ ପରିଣତ ହୋଇ ପରିଣାମରେ ବିବାହ ବିଚ୍ଛେଦ ଘଟୁଛି । ଆଗକାଳରେ ଝିଅମାନେ ଶିକ୍ଷା କ୍ଷେତ୍ରରେ ଅଗ୍ରଗତି କରି ନଥିଲେ, ତେଣୁ ଅନ୍ୟାୟ କି ଅବିଚାରର ପ୍ରତିବାଦ କରିବାର ଯୁ ତାଙ୍କଠି ନଥିଲା । ସର୍ବଂସହା ବସୁନ୍ଧରା ଭାବରେ ପଡ଼ିରହି ସବୁ ସହିନେବାର ଆଦର୍ଶ ନାରୀ ଜୀବନର ଏକମାତ୍ର ଉପାୟ ବୋଲି ଧରାଯାଉଥିଲା । ଏବେ ସେମାନଙ୍କର ଆତ୍ମଚେତନା ଟିକେ ଜାଗ୍ରତ ହେବାପରେ ନୀରବରେ ନ ସହି ପ୍ରତିବାଦ

କରିବାକୁ କଦବା କେଉଁଠି ସାହସ ଯଦି କେହି କରେ, ତେବେ ପୁରୁଷମାନଙ୍କ ପକ୍ଷରେ ତାହା ଅସହ୍ୟ ହେଉଛି ।

କେତେକ ସ୍ଥାନରେ ଝିଅଟିକେ ଅସୁନ୍ଦରୀ ହୋଇଥିଲେ, ସର୍ବସୁଲକ୍ଷଣ ଗୁଣ ଥାଇ ମଧ ସେ ପତି-ପରିତ୍ୟେକ୍ତା ହୋଇ ସମାଜରେ ଅବହେଳିତ ଅବସ୍ଥାରେ ସଢ଼ିବାକୁ ବାଧ ହେଉଛି ଏବଂ ହେଉଥିଲା ମଧ । ସ୍ୱାମୀ ଯେତେ ଇଚ୍ଛା ସେତେ ନାରୀବନ୍ଧୁଙ୍କ ସହ ଘନିଷ୍ଠ ଭାବରେ ମିଶୁ କିମ୍ବା ଯେତେ ଇଚ୍ଛା ବିବାହ, ଅବୈଧ ପ୍ରେମ କରୁ ତା'ର ସମାଜରେ ସ୍ଥାନ କିଛି ଊଣା ହୁଏନାହିଁ । ନାରୀ ଯଦି କୌଣସି ପୁରୁଷ ବନ୍ଧୁ ସହ ଟିକେ ଗପସପ କରିବ, ସ୍ୱାମୀର ଚକ୍ଷୁଶୂଳ ଓ ସମାଜରେ ଘୃଣ୍ୟ ହେବ । ସ୍ୱାଧୀନତା ପରେ ହିନ୍ଦୁନାରୀ ବିବାହ ବିଚ୍ଛେଦର ନ୍ୟାୟ ପାଇବାକୁ ହକ୍‌ଦାର ହୋଇଥିଲେ ବି ମୁସଲମାନ ସ୍ତ୍ରୀ ତା'ର କୌଣସି ଦାବୀ ସ୍ୱାମୀ ଠାରୁ ହାସଲ କରିପାରିବ ନାହିଁ । ଏବେ ସୁପ୍ରିମକୋର୍ଟର ରାୟ ବିରୁଦ୍ଧରେ ବି ବିଲ୍ ପାଶ୍ ହୋଇଗଲା । ଚାକିରି କରି ଉପାର୍ଜନକ୍ଷମ ଶିକ୍ଷିତା ଝିଅ ସ୍ୱାମୀ ପରିତ୍ୟକ୍ତା ହେଲେ ତା'ର ଅବସ୍ଥା ବିଶେଷ ଦୟନୀୟ ହେବା ପୂର୍ବରୁ ସେ କିଛି ଗୋଟିଏ ଉପାର୍ଜନର ପନ୍ଥାଧରି ବଞ୍ଚିଯାଇପାରେ କିନ୍ତୁ ତା'ର ଗୌରବ ସମାଜରେ ଗଣ୍ୟ ହୁଏନା । ସବୁଠୁ ଦୟନୀୟ ହୁଏ ଗାଁ ଗହଳିରେ ଥିବା ଅତି ସାଧାରଣ ଝିଅ । ସେ ସ୍ୱାମୀ ପରିତ୍ୟକ୍ତା ହେଲେ ତା'ର ଗତ୍ୟନ୍ତର ନଥାଏ । ଭାଗ୍ୟକୁ ମାନବ କଲ୍ୟାଣ ନିଷ୍ଠ ମହାତ୍ମାଗାନ୍ଧୀଙ୍କର ସ୍ୱରାଜ ବା ରାମରାଜ୍ୟର ଯୋଜନାରେ କୌଣସି ନାରୀ ନିରେଖ ଅବସ୍ଥାରେ ନ ରହି ନିଜ ଗୋଡ଼ରେ ନିଜେ ଠିଆହୋଇପାରିବ ବୋଲି ଦେଇଥିବା ନିର୍ଦ୍ଦେଶଦ୍ୱାରା ଅସଂଖ୍ୟ ଅସହାୟା ନାରୀ ଆତ୍ମନିର୍ଭରଶୀଳା ହୋଇପାରିଛନ୍ତି ଓ ସମାଜର ସେବା ମଧ କରୁଛନ୍ତି । ଗାନ୍ଧିଜୀଙ୍କର ପଟ୍ଟଶିଷ୍ୟ ରମାଦେବୀ ବହୁ ସଂଖ୍ୟାରେ ନିରକ୍ଷରା, ଅସହାୟା ଝିଅମାନଙ୍କୁ ନିଜ ପାଖରେ ରଖି ସେମାନଙ୍କୁ 'କସ୍ତୁରବା ସେବା ସମିତି'ରେ ଶିକ୍ଷା ଦେଇ ବିଭିନ୍ନ ଜିଲ୍ଲାରେ ଥିବା ଅନୁନ୍ନତମାନଙ୍କର ସେବାରେ ତାଙ୍କୁ ଲଗାଇଛନ୍ତି । ସେହି ନାରୀ କର୍ମୀମାନଙ୍କର ସେବା, ନିଷ୍ଠାର ପ୍ରମାଣ ପାଇ ସରକାର ସେମାନଙ୍କୁ ରାଷ୍ଟ୍ରପତି- ପୁରସ୍କାର ପ୍ରଦାନ କରିଛନ୍ତି । ସେମାନେ ହେଲେ ରମ୍ଭାଦେବୀ ଦ୍ୱିତୀୟା, ଡାକ୍ତର ତୁଙ୍ଗବିଦ୍ୟାଦେବୀ, ସମ୍ବଲପୁରର ପାର୍ବତୀ ଗିରି । କୋରାପୁଟ ଘନଜଙ୍ଗଲରେ ଆଦିବାସୀମାନଙ୍କର ସେବାରେ ନିଜକୁ ନିୟୋଜିତ କରିଥିବା ମାଳତୀ ବିଶ୍ୱାଳଙ୍କ ନାମ ଉଲ୍ଲେଖଯୋଗ୍ୟ । ଏମାନଙ୍କ ବ୍ୟତୀତ ଅନ୍ନପୂର୍ଣ୍ଣା ମହାନ୍ତି, ସତ୍ୟଭାମାପୁରର କସ୍ତୁରବା ସେବାଶ୍ରମର ପୂର୍ବତନ ପରିଚାଳିକା ଅନ୍ନପୂର୍ଣ୍ଣା ଦାସ ପ୍ରଭୃତି ଅନ୍ୟତମା । ଏମାନଙ୍କର ଆଦର୍ଶରେ ଅନୁପ୍ରାଣିତ ହୋଇ ବହୁ ଉଚ୍ଚଶିକ୍ଷିତା କନ୍ୟା ମଧ ଏବେ ସେମାନଙ୍କ ସହିତ ସେବା କାର୍ଯ୍ୟରେ ଯୋଗ ଦେଉଛନ୍ତି । ଅନ୍ୟତମ ପ୍ରଖ୍ୟାତ ନାରୀନେତ୍ରୀ ମାଳତୀ ଚୌଧୁରୀ ତାଙ୍କର ଅନୁଗୁଳସ୍ଥିତ ବାଜିରାଉତ ଛାତ୍ରାବାସରେ ବହୁ ସଂଖ୍ୟକ ଆଦିବାସୀ ଝିଅଙ୍କୁ ଶିକ୍ଷା ଦେଇ ନିଜ ଅଞ୍ଚଳରେ ଅନୁନ୍ନତ ଅଞ୍ଚଳର ଲୋକମାନଙ୍କ

ସେବାରେ ନିଯୁକ୍ତ କରିଛନ୍ତି । ତାଙ୍କ ନିକଟରେ ଅନେକ ନାରୀଙ୍କବି ତାଲିମ ପାଉଛନ୍ତି । ସେମାନଙ୍କ ମଧ୍ୟରେ ଗୌରୀ ଆନ୍ନା ପ୍ରଧାନ । କୋରାପୁଟର ଗୁଣପୁରରେ ଶାନ୍ତି ଦାସ କୌଣସି ଜଣେ ବିଦେଶୀଙ୍କର ବଦାନ୍ୟତାରେ ଗଢ଼ିଉଠିଥିବା ଆଦିବାସୀ ଛାତ୍ରୀନିବାସ ପରିଚାଳନା କରୁଛନ୍ତି । ବିଂଶଶତାବ୍ଦୀରେ ଇଂରେଜ ସଭ୍ୟତାର ପ୍ରଭାବରେ ଆମ ଦେଶରେ ନାରୀଶିକ୍ଷାର ଉନ୍ନତି ହେଲା । ବିଚାର ବିଭାଗରେ, ପ୍ରଶାସନିକ ବିଭାଗରେ, ଓକିଲ, ମାଜିଷ୍ଟ୍ରେଟ ପ୍ରଭୃତି ସ୍ଥାନ ସ୍ତ୍ରୀମାନେ ଲାଭ କରି, ଦକ୍ଷତାର ଦୃଷ୍ଟାନ୍ତ ଦେବା ସମସ୍ତେ ଜାଣନ୍ତି ।

ସ୍ୱାଧୀନତା ସଂଗ୍ରାମ ଯୁଗରେ ଭାରତୀୟ ନାରୀମାନଙ୍କ ତ୍ୟାଗ, କାର୍ଯ୍ୟ ଦକ୍ଷତା ସ୍ୱାଧୀନ ଭାରତ ଇତିହାସରେ ଲିପିବଦ୍ଧ ହେବ । କଂଗ୍ରେସ ମହାସଭାର ପ୍ରାରମ୍ଭିକ ଅବସ୍ଥାରୁ ମହାତ୍ମାଜୀଙ୍କ ଅହିଂସା ଅସହଯୋଗ ପଦ୍ଧତିରେ ବହୁ ବିପ୍ଳବିଣୀ ଯୋଗ ଦେଇ କାରାବରଣ କରି ସଂଗ୍ରାମକୁ ଶକ୍ତିଶାଳୀ କରି ଜନସାଧାରଣଙ୍କୁ ଉଜ୍ଜୀବିତ କରାଇବାରେ ନାରୀମାନଙ୍କ କୃତିତ୍ୱ ସମସ୍ତଙ୍କୁ ଜଣା । ଆନି ବେସାନ୍ତ, ଭଗିନୀ ନିବେଦିତା, ସରୋଜିନୀ ନାଇଡୁ, ତରୁଦତ୍ତ, ବିଜୟଲକ୍ଷ୍ମୀ ପଣ୍ଡିତ, କମଳାଦେବୀ ଚଟ୍ଟୋପାଧ୍ୟାୟ, ରାଜକୁମାରୀ ଅମୃତ କାଉର, ଅରୁଣା ଆସଫ ଅଲି, ବୀଣା ଦାସ, ଅନସୂୟା ବେନ୍ ପ୍ରଭୃତି ଉଲ୍ଲେଖଯୋଗ୍ୟା । ଅନସୂୟା ବେନ୍ ଅହମ୍ମଦାବାଦର ଜଣେ ବଡ଼ ମିଲ ମାଲିକଙ୍କ ଭଉଣୀ । ସିଏ ନିଜ ଭାଇ ଯିଏ କି ମିଲ୍ ମାଲିକ ତାଙ୍କରି ବିରୁଦ୍ଧରେ ଶ୍ରମିକମାନଙ୍କ ସ୍ୱାର୍ଥପାଇଁ ସତ୍ୟାଗ୍ରହ କରିଥିଲେ । ବାସ୍ତବିକ ଭାରତୀୟ ନାରୀ କି ମହାନ ! ବିଜୟଲକ୍ଷ୍ମୀ ପଣ୍ଡିତ ଜାତି ସଂଘର ସେକ୍ରେଟାରୀ ପଦମଣ୍ଡନ କରିଥିଲେ । ଆମ ଓଡ଼ିଶାରେ ବିଶେଷ ଭାବରେ ନାରୀମାନେ ବହୁସଂଖ୍ୟାରେ ଅସହଯୋଗ ଆନ୍ଦୋଳନରେ ଅଂଶ ଗ୍ରହଣ କରି କାରାବରଣ କରିଥିଲେ । ତନ୍ମଧ୍ୟରୁ ୰ ସରଳାଦେବୀ, ୰ରମା ଦେବୀ, ମାଳତୀ ଦେବୀ, ୰ ସୁଭଦ୍ରା ମହତାବ, ୰ଜାହ୍ନବୀ ଦେବୀ, କୋକିଳା ଦେବୀ, ପଣ୍ଡିତ ନୀଳକଣ୍ଠଙ୍କ ପତ୍ନୀ ରାଧାମଣି ଦେବୀ ଅଗ୍ରଗଣ୍ୟା । ସେହିମାନଙ୍କ ଆଦର୍ଶରେ ଅନୁପ୍ରାଣିତ ହୋଇ ମଫସଲ ଓ ସହରର ଶିକ୍ଷିତା, ଅଶିକ୍ଷିତା ଝିଅ ବୋହୂ ଆଇନ୍ ଅମାନ୍ୟ କରି ଜେଲ୍ ଭୋଗିବାରେ ଗୌରବମୟ ଭୂମିକା ନେଇଥିଲେ ।

ତାଳଚେର ପ୍ରଜାମଣ୍ଡଳର ପ୍ରଜାବୃନ୍ଦ ଅତିରିକ୍ତ କର ଭାରର ପ୍ରତିବାଦ କରି ରାଜ୍ୟ ଛାଡ଼ି ଯେତେବେଳେ ଅନୁଗୁଳର କୋଶଳା ଶିବିରରେ ଆଶ୍ରୟ ନେଇଥିଲେ ସେତେବେଳେ ନିଖିଳ ଭାରତ ଗାନ୍ଧୀ ସେବାସଂଘ ଅନୁଷ୍ଠାନ ଓଡ଼ିଶାରେ ରମାଦେବୀଙ୍କ ଦ୍ୱାରା ପରିଚାଳିତ ହେଉଥିଲା । ତାଙ୍କ ଆଶ୍ରମ 'ସେବା ଘର'ର ନାରୀକର୍ମୀମାନେ ସେଠାରେ ସୂତାକଟା, ଖଳିପତର ସିଇଁବା, ବୋବେଇ ଦଉଡ଼ି ତିଆରି ପ୍ରଭୃତି କାମ କରିଆରେ ବିଶେଷ କରି ମହିଳାମାନଙ୍କୁ ସାହାଯ୍ୟ ଦାନ କାର୍ଯ୍ୟରେ ନିଯୁକ୍ତ ଥିଲେ । ତନ୍ମଧ୍ୟରୁ ଲେଖିକା ମଧ୍ୟ ଜଣେ ତତ୍ତ୍ୱାବଧାରିକା ଦାୟିତ୍ୱରେ ଥିଲେ ।

ଗାନ୍ଧିଜୀଙ୍କର ରଚନାତ୍ମକ କାର୍ଯ୍ୟର ଦ୍ୱିତୀୟ ପଦକ୍ଷେପ ହରିଜନ ସେବାକୁ ପ୍ରାଧାନ୍ୟ ଦେଇ । ଗାନ୍ଧିଜୀ ତାଙ୍କର ଶିଷ୍ୟମାନଙ୍କୁ ନିର୍ଦ୍ଦେଶ ଦେଲେ ଯେ ସବୁଠାରୁ ଅବହେଳିତ ଅବସ୍ଥାରେଥିବା ସହରର ମେହେନ୍ତରବସ୍ତିଗୁଡ଼ିକୁ ଯାଇ ସେମାନଙ୍କ ସହିତ ମିଶି, ସେମାନଙ୍କର ଶିକ୍ଷା, ସ୍ୱାସ୍ଥ୍ୟ ଓ ଅବସ୍ଥାର ମାନ ବଢ଼ାଇବା ପାଇଁ । ରମାଦେବୀଙ୍କର ଶିଷ୍ୟାମାନେ ଏହିସବୁ କାର୍ଯ୍ୟପାଇଁ ନିଯୁକ୍ତା ହୋଇଥିଲେ । କାଠଯୋଡ଼ି କୂଳରେ ଅବସ୍ଥିତ ସେତେବେଳର ସବୁଠାରୁ ଅନୁନ୍ନତ ରାଜାବଗିଚା ମେହେନ୍ତର ବସ୍ତିରେ ସେବାକାର୍ଯ୍ୟରେ ଲେଖିକା ମଧ୍ୟ ନିଯୁକ୍ତ ହୋଇଥିଲେ । ଝାଞ୍ଜିରି ମଙ୍ଗଳା, ମଠସାହି, କାଫଲା ପ୍ରଭୃତି ମେହେନ୍ତର ବସ୍ତିରେ ଅନ୍ନପୂର୍ଣ୍ଣା ମହାରଣା, ସୁଶୀଳା ଦେବୀ, ଶୋଭା ଦେବୀ, ମଙ୍ଗଳା ସେନଗୁପ୍ତ ପ୍ରଭୃତି ଅକୁଣ୍ଠିତ ଚିତ୍ତରେ ଆନ୍ତରିକତା ସହିତ ସେମାନଙ୍କର ସେବାକାର୍ଯ୍ୟ କରୁଥିଲେ ।

ପୁରୀର ଡେଲାଙ୍ଗ ଥାନାର ବେରବୋଇ ଗ୍ରାମରେ ଉତ୍କଳମଣି ଗୋପବନ୍ଧୁଙ୍କର ସହକର୍ମୀ ପଣ୍ଡିତ କୃପାସିନ୍ଧୁ ହୋତା 'ସେବା କୁଟୀର' ବୋଲି ଗୋଟିଏ ଆଶ୍ରମ ସ୍ଥାପନ କରି ହରିଜନ ବସ୍ତିରେ ରହୁଥିଲେ । ତାଙ୍କର ବାଲ୍ୟବିଧବା ଭାଇବୋହୂ ୰ସୁନାମଣି ଦେବୀଙ୍କୁ ସେବାକାର୍ଯ୍ୟର ତାଲିମ ପାଇଁ ମହାତ୍ମା ଗାନ୍ଧୀଙ୍କର ସାବରମତୀ ଆଶ୍ରମକୁ ପଠାଇଥିଲେ । ସେଠାରେ ତାଲିମ ପାଇ ସେ ହରିଜନ ମହିଳାମାନଙ୍କ ମଧ୍ୟରେ ସୂତା କଟା, ଲୁଗାବୁଣା, ମୌଳିକ ଶିକ୍ଷା ପ୍ରଭୃତି କାର୍ଯ୍ୟ ପରିଚାଳନା କରୁଥିଲେ । ତାଙ୍କ ସହିତ ୰ ଲକ୍ଷ୍ମୀ ନାନୀ, ୰ ଶ୍ରୀମତୀ ନାନୀ ପ୍ରଭୃତି କେତେକ ବିଧବା ବ୍ରାହ୍ମଣୀ ମଧ୍ୟ ଯୋଗ ଦେଇଥିଲେ । ଗାନ୍ଧିଜୀଙ୍କର ଐତିହାସିକ ପଦଯାତ୍ରାବେଳେ ରମାଦେବୀଙ୍କର ଉପର ଲିଖିତ ଶିଷ୍ୟମାନେ ପ୍ରମୁଖ ଅଂଶଗ୍ରହଣ କରି ରହଣି ସ୍ଥାନମାନଙ୍କର ନିକଟବର୍ତ୍ତୀ ହରିଜନ ବସ୍ତି ସଫେଇ କରିବା, ସେମାନଙ୍କର ପିଲାମାନଙ୍କୁ ପରିଷ୍କାର କରିବା ପ୍ରଭୃତି କାର୍ଯ୍ୟର ଭାର ନେଇଥିଲେ ।

ଗାନ୍ଧିଜୀଙ୍କର ପଦଯାତ୍ରାବେଳେ କେନ୍ଦ୍ରାପଡ଼ାର ରହଣି ସ୍ଥାନ ଖିଣ୍ଟୁଆ ଠାରେ ଗାନ୍ଧିଜୀଙ୍କପରି ମହାନବ୍ୟକ୍ତିଙ୍କୁ ଏହି ଲେଖିକା ଓଡ଼ିଆଭାଷା ପରିଚୟ କରାଇବାର ସୁଯୋଗ ପାଇଥିଲେ । ଗାନ୍ଧିଜୀ ଅଳ୍ପ ସମୟ ମଧ୍ୟରେ ମଧ୍ୟ ଓଡ଼ିଆଭାଷାକୁ ଆୟତ୍ତ କରିପାରିଥିଲେ । କଟକରୁ ବିଦାୟ ନେବା ପର୍ଯ୍ୟନ୍ତ ସେ ଲେଖିକାଙ୍କୁ 'ଗୁରୁଜୀ' ବୋଲି ସମ୍ବୋଧନ କରିଥିଲେ । ସେହି ସମ୍ବୋଧନ ଏବେ ବି ଜୀବନର ପରମ ସୌଭାଗ୍ୟ ବୋଲି ଭାବେ । ମୋର ମନେହୁଏ ସବୁ ମହାପୁରୁଷମାନେ ଅତି ଅକିଞ୍ଚନ ଲୋକଙ୍କୁ ମଧ୍ୟ ଗୌରବ ପ୍ରଦାନ କରିଥାନ୍ତି ।

ଜାତୀୟ ସଂଗ୍ରାମର ମଧ୍ୟ ଯୁଗରେ, ମଝିରେ କଂଗ୍ରେସ ଯେତେବେଳେ ଶାସନଭାର ଗ୍ରହଣ କରିବାକୁ ସମ୍ମତ ହେଲା ସେତେବେଳେ ସବୁ ରାଜ୍ୟ ଓ କେନ୍ଦ୍ରରେ ମହିଳାମାନେ ନିର୍ବାଚନରେ ଭାଗ ନେଇ ଲଢ଼ି ବିଧାନସଭା ଓ କେନ୍ଦ୍ର ପାର୍ଲାମେଣ୍ଟରେ ଭାଗ ନେଲେ ।

ଓଡ଼ିଶାରୁ ରଣପୁରର ରାଣୀ ବସନ୍ତମଞ୍ଜରୀ ଦେବୀ ମନ୍ତ୍ରୀମଣ୍ଡଳରେ ସ୍ଥାନ ଗ୍ରହଣ କରିଥିଲେ । କେନ୍ଦ୍ରରେ ସମ୍ବିଧାନ ପ୍ରଣୟନ ସଭାରେ ମଧ୍ୟ ମାଳତୀ ଚୌଧୁରୀ ସଭ୍ୟା ହୋଇଥିଲେ । ବର୍ତ୍ତମାନର ଭୋଟ ପ୍ରଧାନ ରାଜନୀତିକୁ ସେ ପସନ୍ଦ କରୁନଥିବାରୁ ଓଡ଼ିଶାର ବିଧାନସଭାକୁ ପ୍ରାର୍ଥୀ ହେବାକୁ ସେ କେବେ ପସନ୍ଦ କରିନାହାନ୍ତି । ନିଜର ସ୍ୱାମୀ ମୁଖ୍ୟମନ୍ତ୍ରୀ ନବକୃଷ୍ଣ ଚୌଧୁରୀଙ୍କ ମୁଖ୍ୟମନ୍ତ୍ରୀତ୍ୱ ବେଳରେ ବି ଦୁର୍ବଳ ଗୋଷ୍ଠୀର ଉନ୍ନତି ପାଇଁ ଲଢ଼ିବା ତାଙ୍କର ଧର୍ମ ଥିଲା ଓ ସରକାରର ତ୍ରୁଟି ପାଇଁ ସମାଲୋଚନା କରିବାକୁ ସେ କେବେ ପଛାଇଯାଇନାହାନ୍ତି । କଳାହାଣ୍ଡିର ଦୁର୍ଭିକ୍ଷ ପ୍ରପୀଡ଼ିତ ଅଞ୍ଚଳ ଗସ୍ତ କରି ଦୁର୍ଦ୍ଦଶାଗ୍ରସ୍ତ ଲୋକଙ୍କ ଚିତ୍ର ପ୍ରଦାନ କରି ପାଟନା ମହାରାଜା ରାଜେନ୍ଦ୍ରନାରାୟଣ ସିଂହଦେଓଙ୍କ ଦୃଷ୍ଟି ଫେରାଇ ଆଣିଥିଲେ । ଢେଙ୍କାନାଳର ପଳାତକ ପ୍ରଜା ରାଜ୍ୟଛାଡ଼ି ଅନୁଗୁଳ ସୀମାରେ ଆଶ୍ରୟ ନେଇଥିବାବେଳେ ସେ ନିଜେ 'ବୁଢ଼ାପଙ୍କ'ଠାରେ ଶିବିର ପକାଇ ଶରଣାର୍ଥୀମାନଙ୍କୁ ସାହସ ଓ ପରାମର୍ଶ ଦେଇ ପ୍ରଜାମଣ୍ଡଳର ଦାବୀ ହାସଲ କରାଇପାରିଥିଲେ । ବିଚକ୍ଷଣ ଶାସକ ହରେକୃଷ୍ଣ ମହତାବ ଓ ସର୍ଦ୍ଦାର ପଟେଲଙ୍କ ଦୃଷ୍ଟିକୁ ପ୍ରଜାମଣ୍ଡଳର ଦାବୀ ପ୍ରତି ଆକୃଷ୍ଟ କରିବାରେ ମାଳତୀ ଚୌଧୁରୀ, ସାରଙ୍ଗଧର ଦାସ ଓ କୈଳାସ ଚନ୍ଦ୍ର ମହାନ୍ତିଙ୍କର ଅବଦାନ ବିଷୟରେ ଲୋକେ ଜାଣିବା ଉଚିତ ।

ଶ୍ରୀମତୀ ନନ୍ଦିନୀ ଶତପଥୀ ଓଡ଼ିଶାର ଜଣେ ଟାଣୁଆ ମୁଖ୍ୟମନ୍ତ୍ରୀ ଭାବରେ ଶାସନ କ୍ଷମତା ଚଳାଇ ଖ୍ୟାତ ହୋଇଥିଲେ ବି ନିର୍ବାଚନରେ ଦୁର୍ନୀତି ଓ ଅଜସ୍ର ଅର୍ଥବ୍ୟୟ କରି ଭୋଟ ସଂଗ୍ରହ କରିବା ନୀତିର ପ୍ରତିବାଦ କରିବା ପାଇଁ ସିଏ (ମାଳତୀ ଚୌଧୁରୀ) ଅଣ୍ଟାଭିଡ଼ି ସ୍ୱାଧୀନ ପ୍ରାର୍ଥୀଭାବେ ପ୍ରତିଦ୍ୱନ୍ଦ୍ୱିତା କରିଥିଲେ । ତାଙ୍କର ଧାରଣା ଥିଲା ଯେ ପୂର୍ବର ପ୍ରଜାମଣ୍ଡଳ ଓ ବାଜି ରାଉତ ଛାତ୍ରାବାସ ଇତ୍ୟାଦିରେ ତାଙ୍କର ସେବାର ଅନୁଦାନ ଲୋକଙ୍କ ମନରେ ଜାଗରୁକ ଥିବ ଓ ସେମାନେ ଧନର ଲୋଭରେ ପ୍ରଲୋଭିତ ନ ହୋଇ ପୂର୍ବପରି ତ୍ୟାଗପୂତ ବ୍ୟକ୍ତିଙ୍କୁ ମନୋନୀତ କରିବେ । କିନ୍ତୁ ଅର୍ଥ ଓ କ୍ଷମତାର ଅମୋଘ ଅସ୍ତ୍ର ଲୋକଙ୍କୁ ଅନ୍ଧ କରିସାରିଥିଲା । ତେଣୁ ସିଏ ପରାଜିତା ହେଲେ ଓ ନିଷ୍ଠାପର ସେବା କଥା କିଏ ମନେ ରଖୁଛି ? ତାଙ୍କର ଆଉ ଗୋଟିଏ ସାହସିକ ପଦକ୍ଷେପ ହେଉଛି ଲୋକମାନଙ୍କର ଅନ୍ଧବିଶ୍ୱାସ ଦୂର କରିବା । ରନ୍ତଲେଇ ବାବାର ହୁକୁମ ଔଷଧ ପାଇବାକୁ ସହସ୍ର ସହସ୍ର ଲୋକ ରୁଣ୍ଡ ହୋଇ ଯେଉଁ ମହାମାରୀ ସୃଷ୍ଟି କରିଥିଲେ ସେଠାରେ ତାହାର ନିରାକରଣ ପାଇଁ ବାଳକ ରନ୍ତଲେଇ ବାବାର ଗାଲରେ ସେ ଦୁଇ ଥାପଡ଼ ବସାଇ ଲୋକଙ୍କୁ କହିଥିଲେ ବାବାଙ୍କର ଯଦି ପ୍ରକୃତରେ ଐଶୀଶକ୍ତି ଥିବ ମୋର ମୃତ୍ୟୁ ସଙ୍ଗେ ସଙ୍ଗେ ହେବ । ଲୋକଙ୍କର ମୋହ ଭାଙ୍ଗିଗଲା ଓ ମହାମାରୀରୁ ସେ ଅଞ୍ଚଳ ରକ୍ଷା ପାଇଥିଲା ।

ରମାଦେବୀଙ୍କ ସୂଚାରୁ ଦାୟିତ୍ୱପୂର୍ଣ୍ଣ ସଙ୍ଗଠନ ଶକ୍ତି ଦେଖି ନିଜେ ମହାତ୍ମାଗାନ୍ଧୀ ମୁଗ୍ଧ ହୋଇଯାଇଥିଲେ । ସେ କାର୍ଯ୍ୟ ପରିଚାଳନା ଶିଖାଇବା ପାଇଁ କର୍ମୀମାନଙ୍କୁ ୱାର୍ଦ୍ଧା ଆଶ୍ରମରୁ ରମାଦେବୀଙ୍କ ପାଖକୁ ପଠାଇ ଦେଉଥିଲେ ।

ବିଭିନ୍ନ କ୍ଷେତ୍ରରେ ଭାରତୀୟ ନାରୀମାନେ ଦକ୍ଷତା ପ୍ରଦର୍ଶନ କରୁଛନ୍ତି । ଭାରତୀୟ ସମ୍ବିଧାନରେ ମହିଳାମାନଙ୍କୁ ସମାନ ଅଧିକାର ମିଳିଛି । ଏପରିକି ରାଜ୍ୟପାଳ, ବିଚାରପତି ପଦରେ ମଧ ନାରୀମାନଙ୍କୁ ସ୍ଥାନ ମିଳିଛି ଭାରତରେ । ଭାରତର ଭୂତପୂର୍ବ ପ୍ରଧାନମନ୍ତ୍ରୀ ଇନ୍ଦିରାଗାନ୍ଧୀଙ୍କର ଦୃଢ଼, ବିଚକ୍ଷଣ ଶାସନନୀତି ସାରା ବିଶ୍ୱରେ ସମ୍ମାନ ଲାଭ କରିଛି । ଅବଶ୍ୟ ବହୁ ପୂର୍ବରୁ ଇଂଲଣ୍ଡର ରାଣୀ ଭିକ୍ଟୋରିଆ ଭାରତ ସାମ୍ରାଜ୍ଞୀ ଭାବରେ ନିପୁଣତା ଦେଖାଇଛନ୍ତି । ଶ୍ରୀଲଙ୍କାରେ ଶ୍ରୀମତୀ ଶାରମାଭୋ ଭଣ୍ଡାରେ ନାୟକେ ରାଷ୍ଟ୍ରପତି ହୋଇ ପାରିଥିଲେ । ବିଜ୍ଞାନର ସର୍ବୋଚ୍ଚ ବିକାଶ ଯୁଗରେ ଯେତେବେଳେ ପୃଥିବୀର ମାନବ ଜାତିର ଦୂରତ୍ୱ ଘୁଞ୍ଚିଯାଉଛି, ସେତେବେଳେ ଅତି ଦୁଃଖର ସମ୍ବାଦ ମିଳୁଛି ଯେ ଏପରି ଏକ ଦେଶ ଅଛି ଯେଉଁଠାରେ ନାରୀମାନଙ୍କ ଦୁର୍ଦ୍ଦଶା ଶୋଚନୀୟ । ସମ୍ବାଦପତ୍ରରୁ ଜାଣୁଛୁ ଯେ ଏପରି ବି ଦେଶ ଅଛି ଯେଉଁଠାରେ ମହିଳାମାନେ ଅତି ହୀନ ଜୀବଜନ୍ତୁପରି ଜୀବନ କାଟିବାକୁ ସେ ଦେଶର ଆଇନରେ ବିଧାନ ଅଛି । ଏତିକି ଉଦାହରଣ ଯଥେଷ୍ଟ ଯେ କେବଳ ହାତ ଦୁଇଟି ଛଡ଼ା ଯେଉଁ ସ୍ତ୍ରୀ ଲୋକର କିଛି ଅଂଶ ବା ମୁହଁ ପଦାକୁ ଦେଖାଯିବ ତାକୁ ଜେଲରେ ପୂରାଇ ଏପରି ଏକ ଓଢ଼ଣା ବା ବୁର୍ଖା ପିନ୍ଧିବାକୁ ଦିଆଯିବ ଯେଉଁଥିରେ ବହୁତ ଛାରପୋକ, ମଶା ଓ ବିଷାକ୍ତ ଜୀବମାନଙ୍କୁ ରଖାଯାଇଥିବ । ବିକଳରେ ଛଟପଟ ହେଲେ ବି ସେମାନଙ୍କର ଓଢ଼ଣା ଉତାରି ଦେବାକୁ ଯୁ' ନଥିବ । ଅନେକ ଆତଙ୍କରେ ପ୍ରାଣ ବିସର୍ଜନ କରନ୍ତି । ପୁଣି ଯଦି କୌଣସି ସ୍ତ୍ରୀ ତା'ର ସ୍ୱାମୀଛଡ଼ା ଆଉ କାହା ସହିତ ଆଳାପ କରେ, ତେବେ ତାକୁ ଅଣ୍ଟା ପର୍ଯ୍ୟନ୍ତ ପୋତିଦେବେ ଓ ରାସ୍ତାରେ ଯାଉଥିବା ଲୋକମାନେ ଟେକା-ପଥର ପକାଇ ପକାଇ ମାରିଦେବେ । କି ଲୋମହର୍ଷଣକାରୀ ଦୃଶ୍ୟ ?

ହେ ଭଗବାନ ! ତମ ସାମ୍ରାଜ୍ୟରେ ଏ ଅବସ୍ଥା ବି ମାତୃଜାତିକୁ ଭୋଗିବାକୁ ପଡୁଛି ? ତୁମକୁ ଧନ୍ୟବାଦ ଆମକୁ ଭାରତରେ ଜନ୍ମ ଦେଇଛ । ଭାରତରେ ଜନ୍ମଦେଇ ପ୍ରାଚୀନ କାଳର ବେଦ-ମନ୍ତ୍ରଦେଇ ଦେବୀ ରୂପେ ପୂଜା କରିଛ । ମଧୁସୂଦନ ଦାସ ମଧ ସତୀର ଅପମାନରେ ଧରା ବିଦୀର୍ଣ୍ଣ ହେବ,  ଧରଣୀ ଫାଟିବ, ଉଠିବେ ସହସ୍ର ଭୁଜା ବୋଲି ତାଙ୍କ କବିତାରେ ଲେଖିଛନ୍ତି ।

ହିନ୍ଦୁଶାସ୍ତ୍ରରେ କୁଳବଧୂର ବଂଶରକ୍ଷାକାରିଣୀ, ପରିବାରର କଲ୍ୟାଣମୟୀ ଓ ପତିର ସହଧର୍ମିଣୀ, ସହକର୍ମିଣୀଭାବେ ସ୍ଥାନ ଥିଲେ ବି ବହୁ ନାରୀ ଅବିଚାରିତଭାବେ ପରିବାରରେ

ଲାଞ୍ଛିତା ହେଉଛନ୍ତି । ଏବେ ଆନ୍ତର୍ଜାତିକ ନାରୀ ସମ୍ମିଳନୀମାନ ବି ଅନୁଷ୍ଠିତ ହେଉଛି । ନାରୀ ସମସ୍ୟାମାନଙ୍କର ପୁଙ୍ଖାନୁପୁଙ୍ଖ ଆଲୋଚନାହେବା ସତ୍ତ୍ୱେ ଯୌତୁକ ପ୍ରଥା ବଢ଼ିବା, ଯୌତୁକଜନିତ ମୃତ୍ୟୁ ବି ବହୁତ ସଙ୍ଘଠିତ ହେଉଛି । ସମସ୍ତେ ବ୍ୟଥିତ ନିଜ ଝିଅବେଳକୁ । କିନ୍ତୁ ବୋହୂବେଳକୁ ଅଧିକାଂଶ ଓଲଟା ନୀତିର ମଣିଷ । ଯୌତୁକ ଦାବୀ ବିପକ୍ଷରେ ଯେତେ ଆଲୋଚନା କଲେ କ'ଣ ହେବ, ନାରୀକୁ ଅର୍ଥନୈତିକ ଅଧିକାର ସମାଜ ଦେଇନାହିଁ । ବାପା ସମ୍ପତ୍ତି କି ମା' ସମ୍ପତ୍ତି ପାଇବାର ସେ ହକ୍‌ଦାର ନୁହେଁ । ଆଇନରେ କେବଳ ସେ ଅଧିକାର ମିଳିଥିଲେ ବି ଝିଅର ବାପ ମା'ଙ୍କ ସମ୍ପତ୍ତିରେ ଅଧିକାର ନାହିଁ । ଅବଶ୍ୟ ଏବେ ପୈତୃକ ସମ୍ପତ୍ତିରେ ଝିଅର ଅଂଶ ଆଇନସମ୍ମତ ହୋଇଥିଲେ ବି ସାମାଜିକ ସ୍ତରରେ ତା'ର ପ୍ରଚଳନ ନାହିଁ । କାରଣ ଝିଅ ବାହା ହୋଇ ସ୍ୱାମୀଘରକୁ ଚାଲିଯିବ । ସେ ବାପ ମା'ଙ୍କର ସୁଖ ଦୁଃଖରେ ଭାଗୀହେବନାହିଁ । ଏପରିକି ବାପ ମା'ଙ୍କର ମୃତ୍ୟୁଶଯ୍ୟାରେ ବି ପହଞ୍ଚିବା ସମ୍ଭବ ନୁହେଁ । ତେଣୁ ତା'ର ପିଣ୍ଡରେ ଅଧିକାର ନାହିଁ । ବାହାଘର ଦିନ ଜୀଅନ୍ତା ବାପା ମା' ଓ ପିତୃକୁଳ ମାତୃକୁଳକୁ ଥରେ ପିଣ୍ଡ ଦେଇ ବିଦାୟ ହୋଇଯାଏ ନିଜ ଜନ୍ମଗତ ଗୋତ୍ରରୁ । ଏହା ହିନ୍ଦୁ ସମାଜର ପ୍ରଥା । ଗୋଟିଏ ସଦ୍‌ବଂଶର ଝିଅକୁ ବୋହୂ କରିନେବା ପାଇଁ ସମାଜରେ କୌଣସି ଯୌତୁକ ଦାବୀ ନଥିଲା । ନିଜ ଶକ୍ତି ଓ ଖୁସିରେ ଝିଅକୁ ଯାହା ଉପହାର ସ୍ୱରୂପ ଦିଆଯାଉଥିଲା ସେଥିରେ କାହାରି ଆପତ୍ତି ଓଜର ନଥିଲା । ବାଲ୍ୟବିବାହଯୋଗୁଁ ଝିଅକୁ ଆର୍ଥିକ ସ୍ୱାବଲମ୍ବିନୀ ହେବାକୁ ପାଠ ପଢ଼ାଯାଉନଥିଲା । ଏବେ ସେ ଜମାନା ବଦଳି ଯାଇଛି । ଝିଅର ପାଠପଢ଼ା ତ ପୁଅଠୁ ବି ବେଶୀ ଜରୁରୀ ହୋଇ ପଡ଼ିଛି । ବର ମିଳିବା ମୁସ୍‌କିଲ । ପୁଣି ଯଦି ମିଳେ ଝିଅ ପ୍ରାପ୍ତ ବୟସ୍କା ଓ ଶିକ୍ଷିତା ହୋଇଥିବାରୁ ତା'ର କିଛିଟା ଆତ୍ମ ସମ୍ମାନ ଜ୍ଞାନ ଜାଗ୍ରତ ହୋଇଥାଏ । ତେଣୁ ସେ ସ୍ୱାମୀର ବା ପରିବାରର ସବୁକଥା ନୀରବରେ ସହି ଶାନ୍ତିରେ ରହିବା ସମ୍ଭବ ହୁଏ ନାହିଁ । ବହୁ କ୍ଷେତ୍ରରେ ସେ ପରିବାରରୁ ବିତାଡ଼ିତ ହୁଏ ବା ନିଜେ ଚାଲିଯିବାକୁ ବାଧ ହୁଏ । ଯେଉଁଦିନୁ ହିନ୍ଦୁ ସ୍ତ୍ରୀ ଛାଡ଼ପତ୍ର ଓ କ୍ଷତିପୂରଣ ପାଇବାର (ସ୍ୱାମୀ ଠାରୁ) ଆଇନ ଅନୁଯାୟୀ ହକ୍ ପାଇଲା ସେବେଠୁ ଯୌତୁକ ଜନିତ ବା ଅତ୍ୟାଚାର ଜନିତ ମୃତ୍ୟୁ ଘଟିବାରେ ଲାଗିଛି । ସେ ସ୍ୱାମୀ ଓ ପରିବାରର ଅନୁମତି ପାଇ ଚାକିରି ମଧ କରୁଥାଉ ତଥାପି ମଧ ଆତ୍ମରକ୍ଷାପାଇଁ ବାଧହୋଇ ତାକୁ ଖଣ୍ଡିଏ ପିନ୍ଧି ଘରୁ ବାହାର ଯିବାକୁ ପଡ଼େ । ସେତେବେଳେ ସେ ବାପ ମା' ଭାଇ ଘରକୁ ଯାଇ ଆଶ୍ରା ନବା ଛଡ଼ା ତା'ର ଗତ୍ୟନ୍ତର ନଥାଏ । ଅବଶ୍ୟ ଦୁଷ୍ଟା ପ୍ରକୃତିର ନାରୀମାନଙ୍କ କାର୍ଯ୍ୟକୁ ନେଇ କେହି ଅନୁରୋଦନ କରିପାରେ ନା । ବାପ ମା' ପୁଅର ଶିକ୍ଷା ପାଇଁ ଯେପରି ଖର୍ଚ୍ଚ କରିଥା'ନ୍ତି ଏବେ ଝିଅପାଇଁ ତାଠାରୁ ବେଶି ଖର୍ଚ୍ଚ କରିବାକୁ ପଡ଼ିଲେ ବି କରୁଛନ୍ତି । କାରଣ ଝିଅ ବାହା ହୋଇ ପାରୁ ବା ନପାରୁ ଅନ୍ୟ ଉପରେ ବୋଝ ହୋଇ ସେ ଆଉ ରହିବ ନାହିଁ । କିନ୍ତୁ ଶାଶୁଘରୁ ବିତାଡ଼ିତା ବା ପଳାତିକା

ହୋଇ ଆସିଲେ ସେ କେଉଁଠି ଆଶ୍ରାପାଇ ମୁଣ୍ଡ ଗୁଞ୍ଜିବ ? ସମାଜରେ ବି କୌଣସି ସମ୍ମାନ ଜନକ ସ୍ଥାନ ତାର ନଥାଏ । ବାପ ମା' ଥା'ନ୍ତୁ ବା ନଥା'ନ୍ତୁ ଭାଇ ଭାଉଜଙ୍କ ଆଶ୍ରା ଛଡ଼ା ତା'ର ଅନ୍ୟଗତି ନାହିଁ । ଭାଇ ପରିବାରରେ ଭାଉଜ ତା ପକ୍ଷେ ସନ୍ତ୍ରନାପ୍ରଦ ବି ହୁଏ ନାହିଁ । ସେ ଗଳଗ୍ରହ ବୋଲି ବିବେଚିତ ହୁଏ । ତେଣୁ ଝିଅକୁ ସମ୍ପତ୍ତିରେ ଅଧିକାର ଖାଲି ଆଇନରେ ଦେଲେ ହେବ ନାହିଁ । କେଉଁ ଝିଅ ଭାଇ ସାଙ୍ଗେ ଲଢ଼ି ନିଜ ଅଂଶ ପାଇଁ ଦାବୀ କରିବାକୁ ଚାହିଁବ ? ତେଣୁ ଆମ୍ଭମାନଙ୍କର ବିଚାର, ଥିଲାବାଲା ବାପା ମା' ସମ୍ପତ୍ତିରୁ କିଛି ଅଂଶ ଓ ବାସଗୃହରୁ କିଛି ଅଂଶ ଝିଅ ପାଇଁ ବ୍ୟବସ୍ଥା କରିଦେବା ଉଚିତ୍ । ଜଣେ ଥିଲାବାଲାଲୋକର ଏକରୁ ଅଧିକା ଯେତେବେଶୀ ପୁତ୍ର ସନ୍ତାନ ଜନ୍ମ ହୁଅନ୍ତି ସେମାନଙ୍କର ପୈତୃକ ସମ୍ପତ୍ତିରେ ପରିମାଣ ଅନୁପାତରେ ଜନ୍ମଗତ ଦାବୀ ଥାଏ । ଏହା କାହାକୁ ଅଡୁଆ ବି ବୋଧହୁଏ ନାହିଁ । ଝିଅକୁ କିଛି ଅଂଶ ଦେଇ ଖଣ୍ଡେ ବାସ ସ୍ଥାନର ସୁବିଧା କରାଇଦେଲେ ଝିଅ ବାପା ମା'ଙ୍କର ବିଶେଷ ଚିନ୍ତାର କାରଣ ହୁଅନ୍ତା ନାହିଁ । ନାରୀ ସମସ୍ୟା ପାଇଁ ଏତେ ଚିନ୍ତା ପଡ଼ନ୍ତା ନାହିଁ ।

ଝିଅ ଯଦି ଶାଶୁଘରେ ଭଲରେ ରହି ସୁସ୍ଥରେ ରହିଲା ସେ ନିଜ ଇଚ୍ଛାରେ ଭାଇମାନଙ୍କୁ ସମ୍ପତ୍ତି ଛାଡ଼ି ଦେଲେ ତ ଭଲ କଥା । ଭାଇ ଭଉଣୀଙ୍କର ମଧ୍ୟ ସ୍ନେହ ସମ୍ପର୍କ ରହିବ । ଏ ବିଷୟରେ ସମାଜସେବୀ ମହିଳାମାନଙ୍କର ଓ ଚିନ୍ତାଶୀଳ ବାପା ମା'ଙ୍କର ବିଚାରକୁ ନିବେଦନ କରାଯାଉଛି । ଯାହା ଚିନ୍ତାକୁ ଆସିଲା ଲେଖିଦେଲି । ଶୁଦ୍ଧ ଅଶୁଦ୍ଧ ମିଶାଇ ପଢ଼ିବେ ଓ ଚିନ୍ତିବେ । ଲେଖନକାରର ତ୍ରୁଟି କିପରି ଦେଖିବେ ।



# ଗୋଦାବରୀ ଦେବୀ

ଯୁଧିଷ୍ଠିର ମହାନ୍ତି

ଆଷାଢ଼ର ଶୁକ୍ଳପକ୍ଷ ଏକାଦଶୀ ତିଥି,
ରଚିଲ ପ୍ରୟାଣ ଆହେ ଆମର ଅତିଥି ।
ତବ ଗାଥା ସ୍ମରି କେତେ ନର ନାରୀ,
ସିଞ୍ଚିଲେ ନୀରବେ ନେତ୍ରୁ ଶୋକ ଅଶ୍ରୁ ବାରି ।
ଅହ୍ୟ ବେଶେ କୁସୁମିତ କୋମଳ ଶଯ୍ୟାରେ,
ଗଲ ଅବା ମହାନିଦ୍ରା, ନ ଉଠିଲ ବାରେ ।
କେଉଁଠୁ ଡାକରା ପାଇ କାହା ଇଙ୍ଗିତରେ,
ରଚିଲ ଏ ମହାଯାତ୍ରା, ଫେରିବନି ଥରେ ?
ଗଲ ଚାଲି କେଉଁ ଦୂର ଅଜଣା ରାଇଜେ,
ନିତ୍ୟ ସୁଖ ଶାନ୍ତି ଯହିଁ ସତତ ବିରାଜେ ।
ଭୁଲିଲ ଏ ମରତ ସବୁ ମାୟା ମମତା,
ଅତୀତର କୋଳେ ଯେତେ ସୁଖ ଦୁଃଖ କଥା ।
ସକଳ ବରଜି ତୁମେ କାହାରେ ନ ଚାହିଁ,
ଚାଲିଲ ଏକାକୀ କେହି ସାଙ୍ଗ ସାଥି ନାହିଁ ।
ଆସିବା ଯିବା ଏମନ୍ତ ସଂସାରର ରୀତି,
ସରବେ ନୀତି ଏକା, ନାହିଁ ତ ଅନ୍ୟଗତି ।
ବିଭୁ ପଦେ ଶେଷେ ମୋର ଏତିକି ମିନତି,
ଅମର ଆତ୍ମା ତବ ଲଭୁ ଶାନ୍ତି ସଦ୍‌ଗତି ।



ଏଫ୍-ଏମ୍ କଲେଜ ରୋଡ୍,
ବାଲେଶ୍ୱର

# ରମାଦେବୀଙ୍କର ଅତି ଆଦରର ଗୋଦାବରୀ

ଅନ୍ନପୂର୍ଣ୍ଣା ମହାରଣା

ରମାଦେବୀଙ୍କର ତ ବହୁତ ଝିଅ, ତାଲିକା କଲେ ପୋଥି ହେବ । କିନ୍ତୁ ଗୋଦାବରୀ ଥିଲେ ସେମାନଙ୍କ ମଧ୍ୟରେ ଅନନ୍ୟା, ମଧ୍ୟମଣି । ଆମେ ପରିହାସରେ ତାଙ୍କୁ କହୁଥିଲୁ- ''ସର୍ବେ ପିତଳ ସେ ସୁନା ।''

କାଲିପରି ଲାଗୁଛି ରମାଦେବୀଙ୍କ ପାଖକୁ ଖବର ଆସିଲା କଟକ ଜିଲ୍ଲାର କଲ୍ୟାଣପୁର ଗାଁର ଗୋଟିଏ ଝିଅ ହିନ୍ଦୁସ୍ଥାନୀ ସେବାଦଳର ସ୍ୱେଚ୍ଛାସେବିକା ତାଲିମ ଶିବିରରେ ଯୋଗ ଦେବାକୁ ପଣ କରିଛି । କରଣ ଘରର ବୟଃପ୍ରାପ୍ତା ସୁନ୍ଦରୀ ଝିଅ । ଦାଣ୍ଡକୁ ବାହାରିଲେ ବଂଶମର୍ଯ୍ୟାଦା ହାନି ହେବ । ସେଥିପାଇଁ ଗାଁର ମୁରବିମାନେ ଓ ଝିଅର ବାପା ତାକୁ ଘରେ ବନ୍ଦ କରି ରଖିଛନ୍ତି । ସେ ଅନ୍ନଜଳ ଚାହେଁ ନାହିଁ । ରମାଦେବୀ ଏ ଖବର ପାଇ କଟକର ଓକିଲ ବନବିହାରୀ ପାଲିତଙ୍କ ଝିଅ ବୀଣାପାଣି ଦେବୀଙ୍କ ହାତରେ ଝିଅର ବାପାଙ୍କ ପାଖରୁ ଚିଠି ଲେଖାଇ ତାକୁ କଲ୍ୟାଣପୁର ପଠାଇଲେ । ଝିଅର ବାପା ବାଞ୍ଛାନିଧି ଦାସ କହିଲେ ରମାଦେବୀଙ୍କ ତତ୍ତ୍ୱାବଧାନରେ ଯଦି ମୋ ଝିଅ ରହିବ, ତେବେ ତାକୁ ମୁଁ ଘରୁ ଛାଡ଼ିବି । ବୀଣାପାଣି ଦେବୀଙ୍କ ସଙ୍ଗେ ସେ ଝିଅ ପୁରୀ ଯାଇ ହିନ୍ଦୁସ୍ଥାନୀ ସେବା ଦଳର ସ୍ୱେଚ୍ଛାସେବିକା ତାଲିମ ଶିବିରରେ ଯୋଗ ଦେଲା । ଝିଅଟି ବାଲ୍ୟକାଳରୁ ମାତୃହରା । ସେହିଦିନୁ ସେ ରମାଦେବୀ ଗୋପବାବୁଙ୍କର ସବୁଠାରୁ ଆଦରର ଝିଅ ହୋଇଗଲା । ରୂପରେ ଗୁଣରେ ସେ ଥିଲା ରମାଦେବୀଙ୍କର ସୁନାନାକି ଝିଅ । ଏଇଟା ହେଲା ୧୯୩୧ ମସିହା ନଭେମ୍ବର ମାସ ଶେଷ ଆଡ଼ର ଘଟଣା ।

୧୯୩୧ରୁ ୧୯୪୭ ପର୍ଯ୍ୟନ୍ତ ବିକ୍ଷୁବ୍ଧ ପରାଧୀନ ଭାରତବର୍ଷର ଯେଉଁ ଘଟଣାବଳୀ ଇତିହାସରେ ଲିପିବଦ୍ଧ ହୋଇଛି ସେହି ଘଟଣା ଘଟେଇବାରେ ଯେଉଁ ସହସ୍ର ସହସ୍ର ନରନାରୀ ଭୂମିକା ଗ୍ରହଣ କରି ଥିଲେ; ଏ ଝିଅଟି ସେମାନଙ୍କ ମଧ୍ୟରୁ ଜଣେ । ସେ ହେଉଛି ଗୋଦାବରୀ ଅପା । ଗୋଦାବରୀ ଅପା ୧୯୩୧ ରୁ ୧୯୪୭ ପର୍ଯ୍ୟନ୍ତ ନିରବଚ୍ଛିନ୍ନ ଭାବରେ ଗାନ୍ଧୀ ମାର୍ଗରେ ସ୍ୱାଧୀନତା ଆନ୍ଦୋଳନରେ କାମ କଲା । ମେହେନ୍ତର ବସ୍ତିରେ ମେହେନ୍ତର ପିଲାଙ୍କ ନାକରୁ

ସିଂଘାଣି ପୋଛି ସେମାନଙ୍କୁ ପାଠ ପଢ଼ାଇବା ଠାରୁ ଆରମ୍ଭ କରି ଗାନ୍ଧୀଜୀଙ୍କ ନିର୍ଦ୍ଦେଶରେ ଗ୍ରାମାଞ୍ଚଳରେ ଗାଁଲୋକଙ୍କ ଘରେ ରହି ସେମାନଙ୍କ ଭିତରେ ସ୍ୱରାଜ୍ୟ ପ୍ରୀତି ଜାଗ୍ରତ କରିବା ପାଇଁ ଗାନ୍ଧୀଜୀ ଯାହା ଯାହା ନିର୍ଦ୍ଦେଶ ଦେଲେ ତାକୁ କାର୍ଯ୍ୟକାରୀ କରିବା ପାଇଁ ଗୋଦାବରୀ ଅପା ଆପ୍ରାଣ ଚେଷ୍ଟା କରିଥିଲା । ଗାନ୍ଧୀଜୀଙ୍କର ପ୍ରତ୍ୟକ୍ଷ ସଂସ୍ପର୍ଶରେ ସେ ଆସିଲା ୧୯୩୪ ମସିହାରେ । ଗାନ୍ଧୀଜୀ ପୁରୀରୁ ଭଦ୍ରଖ ପର୍ଯ୍ୟନ୍ତ ଯେଉଁ ହରିଜନ ପଦଯାତ୍ରା କରିଥିଲେ ସେହି ପଦଯାତ୍ରାରେ ଯୋଗ ଦେବାପାଇଁ ହରିଜନ ସେବକ ସଂଘର ଯୁଗ୍ମ ସଂପାଦକ ଦାୟିତ୍ୱରେ ଥିବା ରମାଦେବୀଙ୍କଠାରୁ ଖବର ପାଇ କଟକର ମେହେନ୍ତର ବସ୍ତିରେ କାମ କରୁଥିବା ଆମେ ସବୁ ଝିଅ ପଦଯାତ୍ରାରେ ଯୋଗ ଦେଲୁ । ସେହି ପଦଯାତ୍ରାରେ ଗୋଦାବରୀ ଅପା ଗାନ୍ଧୀଜୀଙ୍କୁ ଓଡ଼ିଆ ପଢ଼େଇଲା । ଆଖି ଆଗରେ ସେ ଦୃଶ୍ୟ ନାଚି ଯାଉଛି । ୧୯୩୪ ମସିହା ମଇ ମାସ ଏକତ୍ରିଶ ତାରିଖ । ବାଗ୍‌ଦା ଗାଁର ବାମନ ଚରଣ ଦାସଙ୍କ ଘରେ ଗାନ୍ଧୀଜୀ ସଦଳବଳେ ଡେରା ପକେଇଥାନ୍ତି । ଚଉପାଢ଼ିର ଗୋଟିଏ ପାଖରେ ଗୋଦାବରୀ ଅପା ଭକ୍ତକବି ମଧୁସୂଦନ ରାଓଙ୍କର ବର୍ଣ୍ଣବୋଧ ଗାନ୍ଧୀଜୀଙ୍କୁ ପଢ଼ାଉଥାଏ । ଗୋପବନ୍ଧୁ ଚୌଧୁରୀ ହୋଇଥାନ୍ତି ସହାୟକ ଶିକ୍ଷକ । ଆମେ ପଞ୍ଚାଏ ଦେଖଣାହାରି । ଗାନ୍ଧୀଜୀ ଦଶ ମିନିଟ୍ ଭିତରେ ଅପାଠାରୁ ହ,କ୍ଷ ଯାଏ ଚିହ୍ନି ପକେଇ ମନ୍ତବ୍ୟ ପ୍ରକାଶ କଲେ- ''ଓଡ଼ିଆ ଲିପିର ଉଦ୍‌ଭବ ବୋଧହୁଏ ସର୍ବଶେଷରେ ହୋଇଛି କାରଣ ଏଥିରେ ଉଚ୍ଚାରଣ ବିଧି ସୁସ୍ପଷ୍ଟ ଏବଂ ଯ ୟ ଦୁଇଟି ଅଲଗା ଅଲଗା ଅକ୍ଷର ଅଛି ଯାହା ଅନ୍ୟ ଭାରତୀୟ ଲିପିରେ ନାହିଁ ।''

ତାହାପରେ ସେ ଓଟ ଛବି ଥିବା ପୃଷ୍ଠା ଉପରେ ଆଖି ପକେଇ 'ଅଖ' 'ରଖ' ପଢ଼ିବା ସଙ୍ଗେ ସଙ୍ଗେ ଗୋଦାବରୀ ଅପାକୁ ତା'ର ଅର୍ଥ ପଚାରିଲେ । ଗୋଦାବରୀ ଅପା ଗୋଟିଗୋଟି କରି ମାନେ କହୁଥାଏ । 'ଊନ' ଶବ୍ଦ ପାଖରେ ସେ ଟିକିଏ ଅଟେଇଲା । ସହାୟକ ଶିକ୍ଷକ ଗୋପବାବୁ ବୁଝାଇ ଦେଲେ 'ଊନ', 'ଊଣା' । 'ଊନବିଂଶ' 'ଊନତ୍ରିଂଶ' ଇତ୍ୟାଦି । ତା'ପରେ ଗାନ୍ଧୀଜୀ ଟିକିଏ ଫାଙ୍କା ସମୟ ପାଇବା ମାତ୍ରେ ଶିଶୁର ପ୍ରିୟ ଖେଳନା ପରି ସେ ବର୍ଣ୍ଣବୋଧ ଖଣ୍ଡିକ ପଢ଼ି ଲାଗିଲେ ଏବଂ ଓଡ଼ିଶାରୁ ବିଦା ହେଲା ବେଳକୁ ଓଡ଼ିଆ ପଢ଼ି ଶିଖିଗଲେ । ଗୋଦାବରୀ ଅପା ବରାବର କହୁଥିଲା- ''ମୁଁ ଗାନ୍ଧୀଜୀଙ୍କୁ ପାଠ ପଢ଼େଇଛି ।''

ପାଠ ପଢ଼ିବା ଓ ପଢ଼େଇବାଟା ଥିଲା ଗୋଦାବରୀ ଅପାର ସ୍ୱଧର୍ମ । ଓଡ଼ିଆ ଭାଷାକୁ ସେ ଏପରି ଆୟତ୍ତ କରିଥିଲା ଯେ ପ୍ରାଚୀନ ଓ ଆଧୁନିକ ଓଡ଼ିଆ ସାହିତ୍ୟର ସବୁ କଠିନ ଶବ୍ଦର ପ୍ରତିଶବ୍ଦ ସତେ କି ତା ଜିହ୍ୱାଗ୍ରରେ ଥିଲା । କିନ୍ତୁ ସ୍ୱାଧୀନତା ହାସଲ କରିବାର ଆକାଂକ୍ଷା ତାର ଏଇ ଜ୍ଞାନସାଧନା ପଥରେ ବାଧକ ହେଲା । ଥରେ ଗୋପବାବୁ ଆମକୁ ସବୁ ପଚାରିଲେ- ''ତମକୁ ଶହେ ଟଙ୍କା ଦେଲେ ତମେ ସେ ଟଙ୍କାକୁ କେମିତି ଖରଚ କରିବ ?'' ଗୋଦାବରୀ

ଅପା ଓଠ ଲଗେଇ କହିଲା- ''ଶହେ ଟଙ୍କାରେ ମୋର କିଛି କାମ ହେବ ନାହିଁ । ବେଶୀ ଟଙ୍କା ପାଇଥିଲେ ଅନେକ ଅନେକ ପାଠ ପଢ଼ିଥାନ୍ତି ।'' ସବୁ କାମରେ ସବୁ କଥାରେ ତାର ଆଖିଟି ବଡ଼ ।

ଆଉ ସାହସ ? ୧୯୪୨ରେ ଭାରତଛାଡ଼ ଆନ୍ଦୋଳନ ଆରମ୍ଭ ହେବା ପରଦିନ ପୁଲିସ୍ ରମାଦେବୀ ଓ ଗୋପବାବୁଙ୍କ କର୍ମକେନ୍ଦ୍ର 'ସେବାଘର' ଦଖଲ କରିବାକୁ ଆସିଲେ । ମଙ୍ଗଳା ଦେବୀ ଓ ଗୁଣନିଧି ମହାନ୍ତି ବିରୋଧ କରିବାରୁ ଗିରଫ ହୋଇଗଲେ । ଗୋଦାବରୀଅପା ଖବର ପାଇ କଲ୍ୟାଣପୁରରୁ ଆସିଲା । 'ସେବାଘର' ବାଉଁଶ ପେଲା ଦିଆ ମାଟି ଘର, ତହିଁରେ ବାଉଁଶ କବାଟ । କୌଣସି କବାଟରେ ଶିକୁଳି ନାହିଁ । ତେଣୁ ପୁଲିସ ସେବାଘରେ ଚାବି ପକେଇ ପାରି ନଥାନ୍ତି । ଗୋଦାବରୀ ଅପା ଏକାଟିଆ ସେହି ସେବାଘରେ ରହି ରତଳାଙ୍ଗ, ଅଟିରା ଆଦି ଗାଁକୁ ଯାଇ ସେବାଘର ଝିଅମାନଙ୍କୁ ଏକଜୁଟ୍ କରି 'ଭାରତ ଛାଡ଼' ବାର୍ତ୍ତା ପ୍ରଚାର କଲା । ତାର ପୁଲିସକୁ ଭୟ ନଥାଏ; ନିନ୍ଦୁକ ସମାଲୋଚକଙ୍କୁ ମଧ ଖାତର ନଥାଏ ।

ଅନେକ ଦିନର ଅନେକ କଥା ଆଜି ମନ ଭିତରେ ଢେଉଁ ଉଠୁଛି । ରମାଦେବୀଙ୍କ ବରାଦରେ ସେ କେତେବେଳେ ନିପଟ ମଫସଲର ଝିଅ ବୋହୂଙ୍କୁ ସମାଜ-ପରିବର୍ତ୍ତନର ଦୀକ୍ଷା ଦେଉଥିଲା ତ କେତେବେଳେ ରେଭେନ୍‌ସା କଲେଜର ଛାତ୍ରଛାତ୍ରୀଙ୍କୁ ସ୍ୱରାଜ୍ୟ ମନ୍ତ୍ରର ଦୀକ୍ଷା ଦେଇଥିଲା । ବହୁ ତରୁଣ ତରୁଣୀ ତା ବିଚାର ଦ୍ୱାରା ଅନୁପ୍ରାଣିତ ହୋଇ ସ୍ୱାଧୀନତା ଆନ୍ଦୋଳନରେ ଯୋଗ ଦେଇଥିଲେ । ବହୁ ଉଚ୍ଚଶିକ୍ଷାପ୍ରାପ୍ତ ଛାତ୍ରଛାତ୍ରୀ ତାର ସ୍ତାବକ ହୋଇଥିଲେ । ପୂଜନୀୟ ସାରଙ୍ଗଧର ଦାସଙ୍କ ପରି ବହୁ ଅଭିଜ୍ଞ ନେତାଙ୍କର ସେ ଥିଲା ସ୍ନେହାସ୍ପଦା ।

ଆଜି ସେ ନାହିଁ । ରମାଦେବୀ ଗୋପବାବୁଙ୍କ ସଂଗେ ତାର ଦେଖା ହୋଇଥିବ କି ! ଦେଖା ହୋଇଥିଲେ ମନର ସବୁ ବ୍ୟଥା ବ୍ୟାକୁଳତା ସେ ସେଇମାନଙ୍କ ଆଗରେ ଅଜାଡ଼ି ଦେଇଥିବ ଆଉ ଗୋପବାବୁ ତା ପିଠି ଆଉଁଶି ଦେଇ କହିଥିବେ ''ଗୋଦରୀ'' !



# ଗୋଦାବରୀ

## କୃଷ୍ଣକାମିନୀ ଦେବୀ

ବିଭାଘର ପରେ ମୋର ସ୍ୱାମୀ ସୁବୋଧ ଦାସ ମୋତେ ସ୍ୱାଧୀନତା ସଂଗ୍ରାମରେ ଅଂଶଗ୍ରହଣ କରିବା ପାଇଁ ଅନୁପ୍ରାଣିତ କଲେ । ମୁଁ ତାଙ୍କ ହାତଧରି ତାଙ୍କରି ଶିକ୍ଷାରେ ଦେଶକାମ ପାଇଁ ଆଗଭର ହୋଇଥିଲି । ଆମ ଯାଜପୁର ଅଞ୍ଚଳର କଲ୍ୟାଣପୁର ଗାଁର ଝିଅ ଗୋଦାବରୀ ସ୍ୱାଧୀନତା ଆନ୍ଦୋଳନରେ ଯୋଗ ଦେବାକୁ ଆଗଭର ବୋଲି ସେହି ଗାଁର ଅନ୍ୟତମ ବିଶିଷ୍ଟ କର୍ମୀ ରଘୁନାଥ ଦାସଙ୍କ ଠାରୁ ଶୁଣିଥିଲି । ପୁରୀଠାରେ କଂଗ୍ରେସ ଅଧିବେଶନ ହେବା ଲାଗି ଯେଉଁ ତାଲିମ ଶିବିର ହୋଇଥିଲା ତା'ର ଦ୍ୱିତୀୟ ପର୍ଯ୍ୟାୟ ପ୍ରଶିକ୍ଷଣ ଶିବିରରେ ଯୋଗ ଦେବା ପାଇଁ ଗାଁରୁ ଆସି ମୁଁ ଯାଜପୁର ସହରରେ ମୋର ଖୁଡ଼ୁତାଶୁରଙ୍କ ଘରେ ପହଞ୍ଚିଲି । ସେଠାରେ ଶୁଣିଲି ଯେ ଗୋଦାବରୀ ତାଙ୍କ ଘରେ ପୁରୀ ଶିବିରକୁ ଯିବାପାଇଁ ଅନଶନ କରିଛି । ଏ ଖବର ସେତେବେଳର ଗୋଟାଏ ଖବରକାଗଜରେ ବାହାରିବାରୁ ଜଣୈକା ନାରୀକର୍ମୀ କଟକରେ ରହୁଥିବା ଗୋଦାବରୀଙ୍କ ବାପାଙ୍କୁ ଦେଖାକଲେ । ରମାଦେବୀ ତା'ର ଦାୟିତ୍ୱନେଲେ ସେ ତା'କୁ ଛାଡ଼ିବେ ବୋଲି ବାପା ଜଣାଇଦେଲେ । ରମାଦେବୀଙ୍କ ନିର୍ଦ୍ଦେଶରେ କଟକର ବିଶିଷ୍ଟ ଓକିଲ ବନବିହାରି ପାଲିତଙ୍କ କନ୍ୟା ବୀଣାପାଣି ଦେବୀ କଲ୍ୟାଣପୁରରେ ଯାଇ ପହଞ୍ଚିଥିଲେ । ସେ ସାଙ୍ଗରେ ଗୋଦାବରୀଙ୍କୁ ଧରି ଆସି ପହଞ୍ଚିଲେ ଯାଜପୁରର ପ୍ରବୀଣଓକିଲ ଜଗମୋହନ ତେୱାରୀଙ୍କ ଘରେ ।

ସେଠାକୁ ମଧ୍ୟ ମୁଁ ଯାଇଥିଲି । ଗୋଦାବରୀ ସହିତ ତାହା ମୋର ପ୍ରଥମ ସାକ୍ଷାତ । ଘର. ବିଶେଷ କରି ଛୋଟ ଭାଇ ଦୁହିଁଙ୍କୁ ଛାଡ଼ି ଆସିଥିବାରୁ ଗୋଦାବରୀର ମନରେ ଦୁଃଖଥିଲା । ପୁଣି ସେ ବୋଧହୁଏ ଏକୁଟିଆ ଏ ଅଞ୍ଚଳରୁ ଯାଉଛି ବୋଲି ଭାବୁଥିଲା । କିନ୍ତୁ ମୁଁ ତା' ସହିତ ଯାଉଥିବା କଥାଶୁଣି ସେ ଭରସା ପାଇଲା । ଆମେସବୁ ସାଙ୍ଗ ହୋଇ ଷ୍ଟେସନ ଚାଲୁ ପୁରୀ ଅଭିମୁଖେ ଯାତ୍ରା କରିବାପାଇଁ । ଦେଶ କାମ କରିବା ପାଇଁ ଘରଦ୍ୱାର ଛାଡ଼ି ଆସିଥିବା ଆମେ ଗୋଟିଏ ଅଞ୍ଚଳର ଦୁଇଜଣ ଝିଅ ଏକମନ ଏକ ପ୍ରାଣ ହୋଇଯାଇଥିଲୁ ।

ପୁରୀଠାରେ ପହଞ୍ଚିବାପରେ ସେଠାରେ ଗୋଟିଏ ସ୍ଥାନରେ ଗୋଦାବରୀ ଓ ମୁଁ ରହୁଥିଲୁ । ସେଠାରେ କର୍ମୀମାନେ ସ୍ତ୍ରୀ ପୁରୁଷ ନିର୍ବିଶେଷରେ ପହରା ଦେବା, ପ୍ରାଥମିକ ଚିକିତ୍ସା କରିବା, ସିଲେଇ କରିବା, କଂଗ୍ରେସର ଇତିହାସ ଶୁଣିବା ଆଦି କାର୍ଯ୍ୟରେ ନିୟୋଜିତ

ଥିଲୁ । ଏ ସବୁ ବିଷୟରେ ଶିକ୍ଷା ଦେବାପାଇଁ ତାଲିମପ୍ରାପ୍ତ କର୍ମୀମାନେ ଥିଲେ । ପୁରୀଠାରେ ଥିବାବେଳେ ଦିନେ ଆମେସବୁ ସମୁଦ୍ର ସ୍ନାନକୁ ଯାଇଥିବା ବେଳେ ହୁଇସିଲରେ ସଂକେତ ପାଇ ସଙ୍ଗେ ସଙ୍ଗେ ଶିବିରକୁ ଫେରିଲୁ । ଅସହଯୋଗ ଆନ୍ଦୋଳନ ଆରମ୍ଭ ହୋଇଯିବା ସଙ୍ଗେ ସଙ୍ଗେ ଗାନ୍ଧିଜୀଙ୍କୁ ବନ୍ଦୀ କରାଯାଇଥିବାର ଖବର ଆସି ପହଞ୍ଚିଥିଲା । ତେଣୁ ସାଙ୍ଗେ ସାଙ୍ଗେ ଶିବିର ଭାଙ୍ଗି ପଳାଇଯିବାକୁ ନିର୍ଦ୍ଦେଶ ଦିଆଗଲା ।

ଶିବିର ଭାଙ୍ଗିଯିବାରୁ ମୁଁ ଯାଜପୁର ଗଲି । ପରେ ରମାଦେବୀଙ୍କ ନିର୍ଦ୍ଦେଶରେ ଆସି କଟକରେ ବିକ୍ଷୋଭ ପ୍ରଦର୍ଶନ କରି ଜେଲ୍ ଗଲି । ତା'ପରେ ମୁଁ କଲିକତା ଯାଇ ସେଠାରେ ମୋ ସ୍ୱାମୀ ସୁବୋଧ ଦାସଙ୍କ ସହିତ ମିଶି ହରିଜନ ସଂଗଠନକୁ ସୁଦୃଢ଼ କରିବାପାଇଁ କାମ କଲି । ସେଠାରେ ଅନୁଶୀଳନସମିତି ଓ ସୁଭାଷ ବୋଷଙ୍କର ଫରୱାର୍ଡ଼ ବ୍ଲକ୍ ସହିତ ସଂପର୍କ ହେଲା । କଲିକତା ପଳାଇ ଯିବାପରେ ଗୋଦାବରୀ ସହିତ ମୋର ଆଉ ପ୍ରତ୍ୟେକ୍ଷ ସଂପର୍କ ରହିଲା ନାହିଁ । ପୁଣିଥରେ ତା' ସହିତ ମିଶି ଦେଶକାମ କରିଥିଲି ଗାନ୍ଧିଜୀଙ୍କ ପଦଯାତ୍ରାବେଳେ । ସେତେବେଳେ ସାଙ୍ଗ ହୋଇ ହରିଜନମାନଙ୍କର ସେବା କରୁଥିଲୁ । ଚାନ୍ଦା ସଂଗ୍ରହ କରୁଥିଲୁ । ସେ କିନ୍ତୁ ଭାଗ୍ୟବତୀ ଥିଲା । ତା' ଉପରେ ଗାନ୍ଧିଜୀଙ୍କୁ ଓଡ଼ିଆ ଅକ୍ଷର ପଢ଼ାଇବାର ଦାୟିତ୍ୱ ନ୍ୟସ୍ତ ଥିଲା ।

ଗୋଦାବରୀ ଅନ୍ୟତମ ବିଶିଷ୍ଟ ସ୍ୱାଧୀନତା ସଂଗ୍ରାମୀ, ରବୀନ୍ଦ୍ର ମୋହନ ଦାସଙ୍କୁ ବିବାହ କରିଛି ଶୁଣି ମୁଁ ଖୁସି ହୋଇଥିଲି । ତା' ସାଙ୍ଗରେ ଆଉ ଦେଖା ହୁଏ ନାହିଁ ସିନା ହେଲେ ପ୍ରଜାତନ୍ତ୍ର ପୃଷ୍ଠାରେ ସେ 'ପୁଣ୍ୟ ସ୍ମୃତିରୁଖିଏ' ଶିରୋନାମାରେ ଆମ କଥାସବୁ ଲେଖୁଥିବାବେଳେ ମୁଁ ସବୁ ଶୁକ୍ରବାର ତା' ଲେଖାକୁ ପଢୁଥିଲି । ଦେଶସେବା ଏବଂ ଆଧ୍ୟାତ୍ମିକ ସାଧନା ଦିଗରୁ ତାର କର୍ତ୍ତବ୍ୟନିଷ୍ଠା ଉତ୍କୃଷ୍ଟଥିଲା । ମନ ତାକୁ ବେଳେବେଳେ ଖୋଜେ । କେବେ କେମିତି ଦେଖାହୋଇଯାଉଥିଲା ସଭା ସମିତିରେ । ସେଇ ପୁରୁଣା ଦିନର କଥାଗୁଡ଼ିକ ମନେ ପକାଇ ସ୍ୱର୍ଗୀୟ ଆନନ୍ଦ ଲାଭକରୁ ଦୁହେଁ । ଏଇ ସେଥର ତା' ସହିତ ଦେଖା ହୋଇଥିଲା ଗୋଟିଏ ସଭାରେ । ନାରୀ ସ୍ୱାଧୀନତା ସଂଗ୍ରାମୀମାନଙ୍କୁ ସମ୍ବର୍ଦ୍ଧିତ କରାଯାଉଥିବା ସେହି ସଭାରେ ତା'ର କିଛି କହିବାର ଥିଲା । ଅସୁସ୍ଥତା ଯୋଗୁଁ ସେ କହିବାକୁ ଯାଇ ନପାରି ମୋତେ ପଠାଇଥିଲା । ସେଦିନ ତା'ର କ୍ଷୀଣକାୟ ଶରୀର ଦେଖି ମୁଁ ବ୍ୟସ୍ତ ବ୍ୟଥିତ ହୋଇ ପଡ଼ିଥିଲି । ଗୋଦାବରୀ ଆଉ ଆମ ଗହଣରେ ନାହିଁ ହେଲେ ଦେଶପାଇଁ ତାର ତ୍ୟାଗ, ଆଧ୍ୟାତ୍ମିକ ଧାରାନୁବର୍ତ୍ତୀ ସଂଗ୍ରାମରଧାରା, ଆଦର୍ଶ ଜୀବନଚର୍ଯ୍ୟା ସମସ୍ତଙ୍କ ଧ୍ୟେୟ ହେବା ଉଚିତ୍



୫୮୯, ଶହୀଦନଗର
ଭୁବନେଶ୍ୱର

# ମହତୀ ନାରୀନେତ୍ରୀ

ସୁଧାମଞ୍ଜରୀ ଦାସ

କଲ୍ୟାଣପୁର ଗାଁ ପାଖରେ ଖରସୁଆଁ ନଈ କୁଳୁକୁଳୁ ନାଦରେ ବୋହି ଯାଉଥାଏ । ସନ ୧୯୩୧ ମସିହା କଥା । ଗାଁଗଣ୍ଡାମାନଙ୍କରେ ସ୍ୱାଧୀନତା ସଂଗ୍ରାମର ଆନ୍ଦୋଳନ ବ୍ୟାପିବାରେ ଲାଗିଥାଏ । ଗାଁର ଝିଅ ବୋହୂମାନେ ମଧ୍ୟ ଏତଦ୍ୱାରା ପ୍ରଭାବିତ ହେଉଥାନ୍ତି । ବାର ଚଉଦ ବର୍ଷର ଝିଅଟିଏ କଅଁଳ ସୁନେଲି ସ୍ୱପ୍ନ ଛାଡ଼ି ତାର ମନରେ ବିଦ୍ରୋହାଗ୍ନି କୁହୁଳିକୁହୁଳି ଉଠୁଥାଏ । ସମବେତ ଗ୍ରାମବାସୀଙ୍କ ସମ୍ମୁଖରେ ତାର ପିତାଙ୍କର ବେତ୍ରାଘାତକୁ ସାହସ ଓ ଧୈର୍ଯ୍ୟର ସହିତ ସାମ୍ନା କରି ଆନ୍ଦୋଳନରେ ପ୍ରତ୍ୟକ୍ଷ ଝାସ ଦେବାପାଇଁ ଯେଉଁ ମହୀୟସୀ ଲଳନା ସ୍ଥିର କରି ଗୃହତ୍ୟାଗ କରିଥିଲେ, ସେଇ ବିଶିଷ୍ଟା ନାରୀନେତ୍ରୀଙ୍କ ନାମ ଗୋଦାବରୀ ଦେବୀ । ୧୯୯୩ ଜୁନ୍ ୩୦ ତାରିଖ ସଂଧ୍ୟାଟିଥିଲା ତାଙ୍କ ପାଇଁ କାଳସଂଧ୍ୟା । ତାଙ୍କ ମହାପ୍ରୟାଣ ଦିବସ । ମହଦ୍ ଆତ୍ମା ଯେତେବେଳେ ମରଣ ଶରୀରକୁ ତ୍ୟାଗ କରନ୍ତି ତାକୁ ମହାପ୍ରୟାଣ ହିଁ କହିବାକୁ ହୁଏ । ଦକ୍ଷିଣ ଗଙ୍ଗା ଗୋଦାବରୀ ନଦୀଭଳି ସେ ପବିତ୍ର ଥିଲେ । ତାଙ୍କର ସ୍ୱଭାବ ଚରିତ୍ରଥିଲା ସ୍ୱଚ୍ଛ ଓ ନିର୍ମଳ । ଐତିହାସିକ ପ୍ରସିଦ୍ଧ ଯାଜପୁର ସବ୍‌ଡ଼ିଭିଜନର ବିଞ୍ଝାରପୁର ଥାନା ଅନ୍ତର୍ଗତ କଲ୍ୟାଣପୁର ଗାଁ ମଝିସାହିରେ ୧୯୧୭ ମସିହାରେ ବାଞ୍ଛାନିଧି ଦାସଙ୍କ ପିତୃଗୃହରେ ଜନ୍ମ ଗ୍ରହଣ କରିଥିଲେ । ସେତେବେଳେ ତାଙ୍କ ପିତା ମାତା ଭାବିନଥିଲେ ଯେ ଭବିଷ୍ୟତରେ ସେ ଜଣେ ବିଶିଷ୍ଟ ସ୍ୱାଧୀନତା ସଂଗ୍ରାମୀ ହୋଇ ନାରୀ ଜଗତରେ ବନ୍ଦନୀୟା ହେବେ । ୧୯୩୪ ମସିହାରେ ଗାନ୍ଧିଜୀ ଓଡ଼ିଶାର ଏଇ ଗାଁଟିକୁ ଯାଇଥିଲେ । ୧୯୩୧ ମସିହାରୁ ଶ୍ରୀମତୀ ଗୋଦାବରୀ ଦେବୀ ତାଙ୍କର ବିପ୍ଳବର ବାର୍ତ୍ତା ଆରମ୍ଭ କରିଦେଇଥାନ୍ତି । ସେତେବେଳେ ସେ ଥିଲେ ମାତ୍ର କିଶୋରୀଟିଏ । ଦେଶକୁ ପରାଧୀନତାର ବ୍ୟାଧି ଏପରି ଗ୍ରାସ କରିଥାଏ ଯେ କୋମଳମତି କିଶୋରୀଟି ମଧ୍ୟ ବିପ୍ଳବିନୀ ସାଜିଥାନ୍ତି ।

ଓଡ଼ିଶାର ସ୍ୱନାମଧନ୍ୟ ଗୋପବନ୍ଧୁ ଚୌଧୁରୀଙ୍କ ନେତୃତ୍ୱରେ ରମାଦେବୀଙ୍କ ପ୍ରତ୍ୟକ୍ଷ ପରିଚାଳନାରେ ବରୀ ଅଂଚଳରେ ନରନାରୀମାନଙ୍କୁ ସ୍ୱାଧୀନତା ସଂଗ୍ରାମର ସୈନିକ ରୂପେ ତିଆରି କରିବା ପାଇଁ ଆଶ୍ରମ ଆରମ୍ଭ କରି ଦେଇଥିଲେ । କାଇପଡ଼ା, ବରୀ, ରାମଚନ୍ଦ୍ରପୁର, ଅନ୍ୟାସପୁର ଇତ୍ୟାଦି ଗ୍ରାମର ଗ୍ରାମବାସୀ ଯୋଗଦାନ କରି ସ୍ୱାଧୀନତା ସଂଗ୍ରାମକୁ ଆଗେଇ ନେଉଥାନ୍ତି । ସେ ରମାଦେବୀଙ୍କୁ 'ବୋଉ' ଡାକୁଥିଲେ ଏବଂ ଗୋପବନ୍ଧୁ ବାବୁଙ୍କୁ 'ବାପା' ଡାକୁଥିଲେ । ଶ୍ରୀମତୀ ଅନ୍ନପୂର୍ଣ୍ଣା ଦେବୀ ଭଗ୍ନୀ ସଦୃଶା ଥିଲେ । ଏହିପରି ଆଶ୍ରମ ଜୀବନ ମଧ୍ୟରେ ସ୍ୱାଧୀନତାର ବହ୍ନି ପ୍ରଜ୍ୱଳିତ ହୋଇଉଠିଥିଲା । ଯେଉଁ ବିଶିଷ୍ଟ ନାରୀ ନେତ୍ରୀମାନେ ସଂଗ୍ରାମରେ ଝାସ ଦେଇଥିଲେ ସେମାନଙ୍କ ମଧ୍ୟରୁ ଅଗ୍ରଗଣ୍ୟମାନଙ୍କ ମଧ୍ୟରେ ସେ ଥିଲେ

ଜଣେ । ଦେଶସାରା ଜେଲଭରୋ ଆନ୍ଦୋଳନରେ ସେ କାରାବରଣ କରିଥିଲେ । କିଏ କିଏ ତିନିବର୍ଷରେ ଖଲାସ ହେଲେ କିଏ ଅବା ଚାରିବର୍ଷ ଜେଲ ଦଣ୍ଡ ଭୋଗିଲେ । ଦେଈ କିନ୍ତୁ ଗୋଟିଏ ବର୍ଷ ଜେଲ ଭୋଗି ଖଲାସ ହୋଇଥିଲେ । ତତ୍‌ପରେ ବର୍ଷେ ଦୁଇବର୍ଷ ଦେଶର ରଚନାତ୍ମକ କାର୍ଯ୍ୟ କଳାପରେ ତାଙ୍କର ବୈବାହିକ ଜୀବନ ଆରମ୍ଭ ହୋଇଥିଲା । ଜନୈକ ଋଷି ପ୍ରତିମ ସ୍ୱାଧୀନତା ସଂଗ୍ରାମୀଙ୍କ ସହିତ ତାଙ୍କର ବିବାହ ସମ୍ପର୍କ ସ୍ଥାପିତ ହୋଇଥିଲା । ସେ ହେଲେ ବାଲେଶ୍ୱର ଜିଲ୍ଲାର ଗୋପାଳ ଗାଁ ଅଧିବାସୀ ଶ୍ରୀ ରବୀନ୍ଦ୍ର ମୋହନ ଦାସ । ସେ ପୁରୁଣା ଜମିଦାର ଘରର ପ୍ରତିପତ୍ତି ସମ୍ପନ୍ନ ପରିବାରର ଥିଲେ । କିନ୍ତୁ ସେ ଜଣେ ନିଚ୍ଛକ ଜନସେବୀ । ସାରା ଜୀବନ ତାଙ୍କର ଦେଶ ସେବାରେ ଉତ୍ସର୍ଗୀକୃତ । ଓଡ଼ିଶାର ବିଶିଷ୍ଟ ସମାଜବାଦୀ ନେତା । ମହିଳା କଲେଜମାନ ସ୍ଥାପନ କରାଇ ସ୍ୱଳ୍ପଶିକ୍ଷିତା ନାରୀମାନଙ୍କୁ ଉଚ୍ଚ ଶିକ୍ଷିତା କରିବାରେ ଲାଗିଛନ୍ତି । ଭଦ୍ରକର ବିଭିନ୍ନ ମହାବିଦ୍ୟାଳୟ ଏବଂ ଗ୍ରାମରେ ଗାନ୍ଧୀ ବିଚାର ମଞ୍ଚ ସ୍ଥାପନ କରି ନିଜେ ତତ୍ତ୍ୱାବଧାନ କରୁଛନ୍ତି ।

ତାଙ୍କ ସହଧର୍ମିଣୀ ଭାବରେ ଦେଈ ବୈବାହିକ ଜୀବନ ପରେ ଜଣେ ସୁଗୃହିଣୀ ହୋଇଥିଲେ । ତାଙ୍କର ଦେଶାତ୍ମବୋଧ ସ୍ୱଭାବକୁ ସେ ଭୁଲି ନଥିଲେ । ୧୯୪୫ରେ ତାଙ୍କର ବିବାହ ସମ୍ପନ୍ନ ହୋଇଥିଲା । ତାଙ୍କର ପ୍ରଥମ କନ୍ୟା ସନ୍ତାନ ଯଶୋଧାରା ୧୯୪୯ରେ ଜନ୍ମ ହୋଇଥିଲେ । ଦ୍ୱିତୀୟା କନ୍ୟା ୧୯୫୨ରେ ଜନ୍ମ ଗ୍ରହଣ କଲେ । ନିଜର ଗୃହିଣୀ କର୍ତ୍ତବ୍ୟରେ ରତଥିବା ସମୟରେ ନାନା ଜନହିତକର ବିଶେଷ କରି ନାରୀ ହିତକର କାର୍ଯ୍ୟମାନ ଶ୍ରୀମତୀ ଅନ୍ନପୂର୍ଣ୍ଣା ମହାରଣାଙ୍କ ସହିତ ସମ୍ପାଦନ କରୁଥିଲେ । ବଳିଷ୍ଠ ଲେଖନୀ ମୁନରେ ତାଙ୍କ ବାର୍ତ୍ତା ଓ ଆଦର୍ଶକୁ ଜନସ୍ମୃତିରେ ଜାଗ୍ରତ କରାଉଥିଲେ । ୧୯୪୬ ମସିହାରେ ବାଲେଶ୍ୱରରେ ନାରୀ ସଂଘ ସ୍ଥାପନ କରିଥିଲେ । ଦେଈ ତାହାର ସଂପାଦିକା ଥିଲେ ଏବଂ ବିଭା ସରକାର ସେ ଅନୁଷ୍ଠାନର ସଭାନେତ୍ରୀ ଥିଲେ । ୧୯୬୯ରେ ସେ ସାହିତ୍ୟ ଏକାଡ଼େମୀ ପୁରସ୍କାର ପାଇଥିଲେ ଏବଂ ୧୯୭୧ରେ ସେ ନୀଳଚକ୍ର ସାହିତ୍ୟିକ ପୁରସ୍କାର ଲାଭ କରିଥିଲେ । ୧୯୬୮ରେ ସେ ରାଜ୍ୟର ସମାଜ ମଙ୍ଗଳ ବୋର୍ଡ଼ର ସଭ୍ୟାଥିଲେ । ବ୍ୟସ୍ତବିବ୍ରତ ଗାର୍ହସ୍ଥ୍ୟ ଜୀବନ ମଧ୍ୟରେ ବହୁ ଯୁବ ଅନୁଷ୍ଠାନକୁ ଆର୍ଥିକ ସାହାଯ୍ୟ କରିବା ସଂଗେ ସଂଗେ ନିଜେ ବିଭିନ୍ନ କାର୍ଯ୍ୟକ୍ରମରେ ଭାଗ ନେଉଥିଲେ । ବହୁ ନାରୀମାନଙ୍କୁ ସାହାଯ୍ୟ ଦେବା ସଙ୍ଗେ ସଙ୍ଗେ ସେମାନଙ୍କ ସାମାଜିକ ସ୍ଥିତିର ଉନ୍ନତ ଅବସ୍ଥା ପାଇଁ ସର୍ବଦା ଚେଷ୍ଟିତ ଥିଲେ । ଆଜି ତାଙ୍କର ଜୀବନ ଦୀପ ନିର୍ବାପିତ ହୋଇ ମଧ୍ୟ ନହେବା ଭଳି ଲାଗୁଛି । ବହୁଦଳିତ ନାରୀମାନଙ୍କ ଅନ୍ତଃସ୍ୱର ମଧ୍ୟରେ ତାଙ୍କର ସ୍ମୃତି ଅଜୟ, ଅକ୍ଷୟ ଓ ଅମର ହୋଇ ରହିବ । ତାଙ୍କ ଆତ୍ମାର ସଦ୍‌ଗତି କାହା ପ୍ରାର୍ଥନା ଉପରେ ନିର୍ଭର କରିବ ନାହିଁ । ଆତ୍ମା ତାଙ୍କର ସ୍ୱତଃ ସଦ୍‌ଗତ । ପରପାରିରେ ଆତ୍ମାଟିକୁ କୋଟି କୋଟି ଶତ କୋଟି ପ୍ରଣାମ ।



*ପ୍ଲଟ- ୧୪, ଅଶୋକନଗର, ଭୁବନେଶ୍ୱର- ୯*

# ପୁଣ୍ୟବତୀ ଗୋଦାବରୀ ଦେବୀଙ୍କ ସାରସ୍ୱତ କୃତି

ସଂଘମିତ୍ରା ମିଶ୍ର

ଅହିଂସା ଆନ୍ଦୋଳନ ମାଧ୍ୟମରେ ଏତେ ବଡ଼ ଉପମହାଦେଶ ଭାରତବର୍ଷ ସ୍ୱାଧୀନ ହେବା ଚଳିତ ଶତାବ୍ଦୀର ସବୁଠାରୁ ମହତ୍ତ୍ୱପୂର୍ଣ୍ଣ ଘଟଣା । ପଚାଶବର୍ଷ ପରେ ମଧ୍ୟ ଏ ଆନ୍ଦୋଳନର ଅଙ୍ଗେଲିଭା ସ୍ମୃତି ଆମକୁ ଉଦ୍‌ବୁଦ୍ଧ କରିଥାଏ । ସେତୁବନ୍ଧ ପ୍ରତିଷ୍ଠାରେ ଗୁଣ୍ଡୁଚିମୂଷାର ଶ୍ରମଦାନ ସଦୃଶ୍ୟ ଜନ୍ମଭୂମିର ଉଦ୍ଧାର ପାଇଁ ଯେତେ କ୍ଷୁଦ୍ରହେଲେ ହେଁ ବ୍ୟକ୍ତିର ଆତ୍ମଦାନ ମହୀୟାନ ନିଶ୍ଚୟ । 'ପୁଣ୍ୟବତୀ ଗୋଦାବରୀ' ସେହି ଭଳି ଏକ ମହନୀୟା ନାରୀଙ୍କର ଜୀବନାଲେଖ୍ୟ ଓ ସେଥିସହିତ ଏକତ୍ରିତ ହୋଇଥିବା ତାଙ୍କର ଜୀବନୀର ଆକର୍ଷଣୀ ଶକ୍ତି ଯଥେଷ୍ଟ । ପୁଣ୍ୟ ଗୋଦାବରୀ ଭଳି ନିଜର ଦୁଇକୂଳକୁ ଆତ୍ମୀୟତାରେ ଭରି ଦେଇଥିବା ଏହି ନାରୀଙ୍କର ଜୀବନ ପ୍ରତି ଥିଲା ଅନନ୍ୟ ସାଧାରଣ ଦୃଷ୍ଟିଭଙ୍ଗୀ ।

ସ୍ୱାଧୀନତା ଆନ୍ଦୋଳନର ଇତିହାସ, ବହୁ ଐତିହାସିକ ରଚନା କରିଛନ୍ତି । ବହୁ ବକ୍ତା ଭାବଗମ୍ଭୀର ସ୍ୱରରେ ସଂଗ୍ରାମୀମାନଙ୍କ ତ୍ୟାଗର କାହାଣୀ ଶୁଣାଇ ଆମକୁ ଉଦ୍ଦୀପ୍ତ କରିଛନ୍ତି । ମାତ୍ର ନିଜର ସୀମିତ ଶକ୍ତି ଦେଇ ସ୍ୱାଧୀନତା ଆନ୍ଦୋଳନକୁ ଭୋଗିଥିବା ଏହି ନାରୀ ପୁଣ୍ୟତୋୟା ଗୋଦାବରୀ ଭଳି ନିଜ ପରିବେଶକୁ ଭାବମୟ କରିବା ସହିତ ପାଠକ ପାଇଁ ପରଶି ଦେଇଛନ୍ତି ଭାବପ୍ରବଣତାରେ ସିକ୍ତ ତାଙ୍କର ଜୀବନ କାହାଣୀ, ଯାହାର ଶୀର୍ଷକ ସେ ରଖିଛନ୍ତି 'ପୁଣ୍ୟ ସ୍ମୃତିରୁ ଖିଏ' । ଏହି ଜୀବନସ୍ମୃତି ୧୩ । ୧୨ । ୬୮ଠାରୁ ୪ । ୪ । ୬୯ ପର୍ଯ୍ୟନ୍ତ ଦୈନିକ ପ୍ରଜାତନ୍ତ୍ରରେ ୮ଟି ଭାଗରେ ବିଭକ୍ତ ହୋଇ ପ୍ରକାଶିତ ହୋଇଥିଲା । ପରେ ୩୧ । ୭ । ୮୭ରୁ ପ୍ରାକ୍ ସ୍ୱାଧୀନତା ଯୁଗରେ ଭାରତୀୟ ନାରୀ ଶୀର୍ଷକ ଆଲୋଚନା 'ପ୍ରଜାତନ୍ତ୍ର'ର ନାରୀଜଗତରେ ୧୧ । ୯ । ୮୭ ପର୍ଯ୍ୟନ୍ତ ପାଞ୍ଚୋଟି ଅଧ୍ୟାୟରେ ବିନ୍ୟସ୍ତ ହୋଇ ପ୍ରକାଶିତ ହୋଇ ଯଥେଷ୍ଟ ଆଦୃତ ହୋଇଥିଲା ।

ଲେଖାଲେଖିର ଅଭ୍ୟାସ ନଥିବା କଥା ବାରମ୍ବାର ଉଲ୍ଲେଖ କରି ନିଜର ରଚନାକୁ ପଲାଉ ମାଂସ ମିଷ୍ଟାନ୍ନ ମଧ୍ୟରେ ଶାଗ ଭଳି ପରିବେଷଣ କରିଥିବା ଏହି ପ୍ରତିଭା ପ୍ରକୃତରେ ଅନେକଙ୍କ ମଧ୍ୟରେ ଅନନ୍ୟା ହୋଇ ବଞ୍ଚିଥିଲେ । ଯତ୍ ସାମାନ୍ୟ ଅନୁଷ୍ଠାନିକ ଶିକ୍ଷା ପାଇଥିବା

ଏହି ନାରୀ ଦଶବର୍ଷରେ ମାତୃହରା ହୋଇଥିଲେ ଓ ଧ୍ୟାନ ପ୍ରାର୍ଥନା ଇତ୍ୟାଦି କରି ଈଶ୍ୱରଙ୍କ ସାକ୍ଷାତ ପାଇବାର କାମନା କରିଥିଲେ । ଈଶ୍ୱରଙ୍କୁ ସେ ନିଜ ମାତାଙ୍କର ଜୀବନ ମାଗି ଆଣିବେ ବୋଲି ଚିନ୍ତାକରୁଥିଲେ ଯାହାପରେ ନିଛକ ପିଲାଳିଆମି ବୋଲି ସେ ବୁଝି ପାରିଥିଲେ । ଜିଦ୍‌ରେ ସେ ସୂତା କାଟୁଥିଲେ । ଭଲ ଭଲ ବହି ପଢୁଥିଲେ । କୁମାର ପୂର୍ଣ୍ଣମୀରେ ନିଜ କଟା ସୂତାରେ ବୁଣା ଖଦି ପିନ୍ଧିବା ପାଇଁ ସେ ଓ ତାଙ୍କ ସାଥୀମାନେ ଯେଉଁଭଳି ପ୍ରତିଜ୍ଞା କରିଥିଲେ ତାହା ଆଜି ସ୍ୱପ୍ନ ଭଳି ମନେହୁଏ । ସେସମୟରେ ପାଠପଢ଼ା ବା ସରକାରୀ ଚାକିରି ଛାଡ଼ି ଗ୍ରାମସୁଧାର ଓ ସ୍ୱଦେଶୀ ଭାବନା ପ୍ରଚାର କରୁଥିବା ମଣିଷମାନଙ୍କୁ ଗ୍ରାମମାନଙ୍କରେ ସମ୍ମାନଜନକ ଦୃଷ୍ଟିରେ ଦେଖାଯାଉଥିଲା । ଲେଖିକା ତାଙ୍କୁ ପ୍ରଭାବିତ କରିଥିବା ଏହି ପର୍ଯ୍ୟାୟର ଯେଉଁ ମହାପୁରୁଷମାନଙ୍କ ନାମ ଉଲ୍ଲେଖ କରିଛନ୍ତି, ସେମାନେ ହେଲେ ଅଦ୍ୱୈତଚରଣ ଦାସ, ରଘୁନାଥ ଦାସ, ପ୍ରାଣକୃଷ୍ଣ ପଟ୍ଟନାୟକ, ଗୋପବନ୍ଧୁ ଚୌଧୁରୀ, ଆଚାର୍ଯ୍ୟ ହରିହର ଓ ଯୁଗଳକିଶୋର ଦାସ । ଏତଦ୍‌ବ୍ୟତୀତ ଶିକ୍ଷାବିଭାଗର ଲାଲବିହାରୀ ପଟ୍ଟନାୟକ, ଯେ କି ଖଦି କର୍ମୀମାନଙ୍କ ସହିତ ସହଯୋଗ କରି ଚାକିରିଚ୍ୟୁତ ହୋଇଥିଲେ, ସେଥିଲେ ଲେଖିକାଙ୍କର ଅନ୍ୟତମ ଦୀକ୍ଷାଗୁରୁ ନାଲା'ଦା ।

ଗୋଦାବରୀଦେବୀଙ୍କ ଜୀବନ ଥିଲା ବହୁ ବିପରୀତ ଧର୍ମୀ ବିଚାରରେ ଭରା । କରଣ ଘର ଝିଅ ହୋଇ ମଧ୍ୟ ସେ ଅସହଯୋଗ ପଟୁଆରକୁ ବନ୍ଦାପନା କରିଥିଲେ ଓ ଦୁଃସାହସ କରି ରମାଦେବୀଙ୍କ ସଭାରେ ଭାଷଣ ମଧ୍ୟ ଦେଇଥିଲେ । ନିଜ ଚେଷ୍ଟାରେ ଦାର୍ଢ୍ୟତାଭକ୍ତି, ମାର୍କଣ୍ଡପୁରାଣ, ରାମାୟଣ, ମହାଭାରତ ଓ ଭଗବଦ୍‌ଗୀତା ପଢ଼ିଥିଲେ । ଏହା ସହିତ ଉତ୍କଳମଣିଙ୍କର ବନ୍ଦୀର ଆତ୍ମକଥା, ହରେକୃଷ୍ଣ ମହତାବଙ୍କର ପଲାସୀ ଅବସାନେ, କୁନ୍ତଳାକୁମାରୀଙ୍କର ଆହ୍ୱାନ, କାନ୍ତକବି ଲକ୍ଷ୍ମୀକାନ୍ତଙ୍କର ଜାତୀୟ ସଂଗୀତ ଓ ଜାତୀୟକବି ବୀରକିଶୋରଙ୍କର ମୋହନବଂଶୀଦ୍ୱାରା ସେ ବହୁଭାବରେ ଅନୁପ୍ରାଣିତ ହୋଇଥିଲେ । ପ୍ରିୟ ନାଲାଦାଙ୍କ ସାହାଯ୍ୟରେ ସେ ହିନ୍ଦୀ ଭାଷା ଶିକ୍ଷାକରିଥିଲେ ଓ ଗାନ୍ଧିଜୀଙ୍କର 'ହିନ୍ଦୀସ୍ୱରାଜ୍ୟ' ପାଠକରିଥିଲେ । ପୁରୀର ଅସହଯୋଗ ଶିବିରରେ ଯୋଗ ଦେବାପାଇଁ ଇଚ୍ଛାକରି ସେ ବହୁ ବାଧାବିଘ୍ନର ସମ୍ମୁଖୀନ ହୋଇଥିଲେ ମାତ୍ର ଲୁଚି ଚାଲିଯିବାର ସୁଯୋଗ ପାଇ ମଧ୍ୟ ତାହା ଗ୍ରହଣ କରିବାକୁ ତାଙ୍କ ବିବେକ ତାଙ୍କୁ ବାଧା ଦେଇଥିଲା । ଗାନ୍ଧିଜୀଙ୍କ ବ୍ୟକ୍ତିତ୍ୱଦ୍ୱାରା ଅନୁପ୍ରାଣିତ ଗୋଦାବରୀ ଛଅଦିନ କାଳ ଅନଶନ କରି ବାପାଙ୍କ ଉପରେ ନୈତିକ ପ୍ରଭାବ ପକାଇବାର ଚେଷ୍ଟା କରିଥିଲେ । ଶେଷରେ ରମାଦେବୀଙ୍କ ଦାୟିତ୍ୱରେ ପୁରୀ ଯିବାର ନିର୍ଦ୍ଦେଶ ତାଙ୍କୁ ମିଳିଥିଲା । କିନ୍ତୁ ବାପା ତାଙ୍କର ମୁହଁ ଚାହିଁବେ ନାହିଁ ବୋଲି ଘୋଷଣା ମଧ୍ୟ କରିଦେଇଥିଲେ । ଏହି ମହିଳା ମହାତ୍ମାଗାନ୍ଧୀଙ୍କୁ ଓଡ଼ିଆ ଶିଖାଇ ତାଙ୍କର 'ଗୁରୁଜୀ' ହେବାର ଅନନ୍ୟ ସୌଭାଗ୍ୟର ଅଧିକାରିଣୀ ମଧ୍ୟ ହୋଇଥିଲେ । ଯେଉଁ ସମାଜରେ ବିବାହଯୋଗ୍ୟା ଝିଅ ବାପା ଭାଇଙ୍କ ଆଗରେ କଥା କହିବା ମଧ୍ୟ ଅସମ୍ମାନଜନକ ଥିଲା ସେଠାରେ ସେ ବିଦେଶୀ ଲୁଗା ଜଳାଇ ଦେଇଥିଲେ ଓ କିଶୋରୀ ସୁଲଭ କୌତୂହଳରେ ତନ୍ତଲୁଗା ପିନ୍ଧା ଆରମ୍ଭ କରିଥିଲେ ହେଁ

ସମଗ୍ର ଜୀବନ ତାହା ଛାଡ଼ି ପାରିନଥିଲେ । ତାଙ୍କ ଭାଷାରେ- ନିଜ ଆଗ୍ରହ ଓ ଉତ୍ସାହରେ ସେ ପୋଡ଼ିବା କିନ୍ତୁ ଆଜିକାଲିର ବିପ୍ଳବୀମାନେ ଷ୍ଟେଟ ବସ୍, ଟ୍ରେନ ଇତ୍ୟାଦି ପୋଡ଼ିବା ପରି ନୁହେଁ । ତାହା ଦେଶର ପରାଧୀନତା ଓ ଅକ୍ଷମତାକୁ ଅନଳରେ ଧ୍ୱଂସ କରି ସ୍ୱାଧୀନତା ତଥା ସ୍ୱାବଲମ୍ବୀ ହେବାପାଇଁ ଉଦ୍ଦିଷ୍ଟ ଥିଲା । (ପୁଣ୍ୟସ୍ମୃତିରୁ ଖିଏ-୩)

ଖବରକାଗଜରୁ ଦେଶର ଖବର ଜାଣିବାର ଆଗ୍ରହ ଦିନେ ଗୋଦାବରୀଙ୍କୁ ସମ୍ବାଦର ଶିରୋନାମା କରିଦେଇଥିଲା । ସେ ଅନଶନ କରିଥିବାବେଳେ ତାଙ୍କର ମନୋବଳକୁ ସମର୍ଥନ କରି ବୀରକିଶୋର ବେହେରା ନାମକ ଭଦ୍ରବ୍ୟକ୍ତି 'ସାବାସ୍ ଗୋଦାବରୀ' ଶୀର୍ଷକ ସମ୍ବାଦ ତାଙ୍କ ସଂପାଦିତ 'ଆର୍ଯ୍ୟ' ପତ୍ରିକାରେ ଲେଖିଥିଲେ । 'କୁମାରୀ ସଂସଦରୁ' ଆରମ୍ଭ ହୋଇ 'କର୍ମସଂସ୍ଥାନ'ରେ ବିକଶିତ ହୋଇଥିବା ଏହି ପ୍ରତିଭା ସକଳ ପ୍ରତିକୂଳ ପରିସ୍ଥିତି ସହିତ ସଂଗ୍ରାମ କରି ଶେଷରେ ନିଜର ପ୍ରତୀକ୍ଷିତ ଲକ୍ଷ୍ୟସ୍ଥଳରେ ପହଞ୍ଚିଛନ୍ତି । ରମାଦେବୀଙ୍କୁ ମାଆ ଓ ଗୋପବନ୍ଧୁ ଚୌଧୁରୀଙ୍କୁ ବାପା ବୋଲି ସମ୍ବୋଧନ କରିବା ଭିତରେ ତାଙ୍କ ସାମନାରେ ନୂଆ ଏକ ପୃଥିବୀର ଦ୍ୱାର ସତେ ଯେପରି ଖୋଲି ଯାଇଥିଲା । ଜୀବନକୁ ଭଲପାଇ ତାର ଅର୍ଥ ବୁଝିବାକୁ ଚେଷ୍ଟା କରୁଥିବା ତରୁଣୀ ଗୋଦାବରୀ ବିଭିନ୍ନ ଭାଷାର ପୁସ୍ତକ ପଠନ କରି ଜୀବନ ପ୍ରତି ନୂତନ ଦୃଷ୍ଟିଭଙ୍ଗୀ ଗ୍ରହଣ କରିଥିଲେ । ସ୍ୱାଧୀନତା ସଂଗ୍ରାମୀ ରବୀନ୍ଦ୍ର ମୋହନ ଦାସଙ୍କୁ ବିବାହ କରି ପରିବାର ଧର୍ମ ପାଳନ କରିଥିଲେ ହେଁ ସେ ଥିଲେ ବିପ୍ଳବିଣୀ । ତାଙ୍କ ବ୍ୟକ୍ତିତ୍ୱରେ ମାଧବୀଦାସୀଙ୍କ ଭକ୍ତିଭାବ ଓ ଶୁକଦେଇଙ୍କ ବୀରତ୍ୱ ଏକୀଭୂତ ହୋଇଯାଇଥିଲା । 'ପୁଣ୍ୟସ୍ମୃତିରୁ ଖିଏ' ଶୀର୍ଷକ କ୍ରମିକ କାହାଣୀରେ ସେ ନିଜର ଜୀବନ ଓ ତାହାକୁ କେନ୍ଦ୍ରକରି ଘୂରୁଥିବା ଗାନ୍ଧୀକେନ୍ଦ୍ରିକ ଓଡ଼ିଆ ସମାଜଜୀବନର କଥା ହିଁ କହିଛନ୍ତି । ଏଥିରେ ବିପ୍ଳବ କହିଲେ କେବଳ ବିଦେଶୀ ସହ ଅସହଯୋଗ ନୁହେଁ ସକଳ ସାମାଜିକ ଦୁର୍ଗତି ବିରୁଦ୍ଧରେ ବିପ୍ଳବ ।

ସେ କେବଳ ନିଜ ସମୟର କଥା କହି ସନ୍ତୋଷ ଲାଭ କରି ପାରିନାହାନ୍ତି ବରଂ ''ପ୍ରାକ୍ ସ୍ୱାଧୀନତା ଯୁଗରେ ଭାରତୀୟ ନାରୀ'' ଶୀର୍ଷକ ଚାରିଟି ପ୍ରବନ୍ଧରେ ପୁରାଣ ଯୁଗରୁ ଆଧୁନିକ ଯୁଗ ପର୍ଯ୍ୟନ୍ତ ଭାରତୀୟ ନାରୀର ଗୌରବ ତଥା ସମସ୍ୟାର କଥା ଉଲ୍ଲେଖ କରିଛନ୍ତି । ମାତୃଶକ୍ତିର ବିବିଧ ରୂପ ପରିକଳ୍ପନା ମଧ୍ୟରେ ଦୁର୍ଗା, ସରସ୍ୱତୀ ଓ ଲକ୍ଷ୍ମୀଙ୍କ ସଂପର୍କୀୟ ତାଙ୍କର ଧାରଣାରେ ଆମେ ତାତ୍ତ୍ୱିକତାର ସ୍ପର୍ଶ ପାଉ । ଏହାପରେ ଇତିହାସର ନାରୀପ୍ରତିଭାମାନଙ୍କୁ ସେ ସମ୍ମାନ ଜଣାଇଛନ୍ତି । ସେ ସମୟରେ ମହିଳାମାନେ ବଡ଼ ବଡ଼ କଂସା ପିତଳର ଖଡୁ, ପଇଞ୍ଚି ଓ କତୁରୀ ପିନ୍ଧୁଥିଲେ । ଲେଖିକାଙ୍କ ମତରେ ଏଗୁଡ଼ିକ ଥିଲା ନିଜର ମହତ୍ତ୍ୱ ଓ ଆତ୍ମରକ୍ଷା ପାଇଁ ଉଦ୍ଦିଷ୍ଟ । ସେ ସମୟରେ ଫେଚାଲ ବୋଲି କିଛି ନଥିଲା । ଜିନିଷ ଭଳି ମଣିଷର ମନ ବି ଥିଲା ଖାଣ୍ଟି, ପରିଚ୍ଛନ୍ନ ।

ସତୀଦାହ ପ୍ରଥାର ନିଷ୍ଠୁରତା କଥା ଆଲୋଚନା କରିବାବେଳେ ସେ ପଦ୍ମିନୀ ଓ ସଂଯୁକ୍ତାଙ୍କ ବୀରତ୍ୱର କାହାଣୀ କହିଛନ୍ତି । ଯୌତୁକ ନିର୍ଯ୍ୟାତନା ଭଳି ଘରଛାଡ଼ି ବାହାରେ

କାମ କରୁଥିବା ନାରୀର ନିର୍ଯ୍ୟାତନା କେତେ ମର୍ମାନ୍ତିକ ଏହା ସେ ଅନୁଭବରେ ଆଣି ପାରିଛନ୍ତି । ତେଣୁ ନାରୀର ଦୁରବସ୍ଥା ପ୍ରତି ତାଙ୍କ ମନରେ ଅସୀମ ମହତ୍ୱବୋଧ ସୃଷ୍ଟି ହୋଇଛି । ସର୍ବଭାରତୀୟ ସ୍ତରର ନାରୀନେତ୍ରୀ ଆନିବେସାନ୍ତ, ସରୋଜିନୀ ନାଇଡୁ, ବିଜୟଲକ୍ଷ୍ମୀ ପଣ୍ଡିତ, କମଳାଦେବୀ ଚଟ୍ଟୋପାଧ୍ୟାୟ, ରାଜକୁମାରୀ ଅମୃତକାଉର, ଅରୁଣା ଆସଫଅଲ୍ଲି, ଅନସୂୟା ବେନ୍ ପ୍ରଭୃତିଙ୍କ ବିଷୟରେ ସେ ବହୁବାର ଉଲ୍ଲେଖ କରିଛନ୍ତି । ସେହିପରି ଓଡ଼ିଶାର ସଂଗ୍ରାମୀ ନାରୀ ପ୍ରତିଭାଙ୍କ ମଧ୍ୟରୁ ସେ ରମାଦେବୀ, ମାଳତୀ ଦେବୀ, ତୁଙ୍ଗବିଦ୍ୟାଦେବୀ, ପାର୍ବତୀ ଗିରି, ଶାନ୍ତି ଦାସ, ଗୌରି ଆମ୍ମା ଓ ଅନ୍ନପୂର୍ଣ୍ଣା ଦେବୀ ପ୍ରଭୃତିଙ୍କର ତ୍ୟାଗ ଓ ଦେଶପ୍ରୀତିକୁ ସମ୍ମାନ ଜଣାଇଛନ୍ତି ।

ପେଡ଼ି, ପଙ୍ଖା, ଆସନ, ବାଉଁଶ, ତାଳପତ୍ରରେ ବିଞ୍ଚଣା, ଚିତାମୁରଜ ଓ ଭଜନ ତାଙ୍କ ଚରିତ୍ରର ପାରମ୍ପରିକ ଦିଗକୁ ଆଲୋକିତ କରିବାବେଳେ ଗ୍ରାମ ସ୍ୱରାଜ, ଜାତୀୟତାବାଦୀ ସଂଗୀତ, ଅସହଯୋଗ ତଥା ସତ୍ୟାଗ୍ରହ ତାଙ୍କ ଜୀବନର ଅନ୍ୟ ଦିଗକୁ ଆଲୋକଦୀପ୍ତ କରିପାରିଛି । ଯୌତୁକପ୍ରଥାର କୁପରିଣତି ତଥା ପତି ପରିତ୍ୟକ୍ତା ନାରୀର ଅମର୍ଯ୍ୟାଦା ମଧ୍ୟ ତାଙ୍କୁ ଅବସାଦଗ୍ରସ୍ତ କରିଛି । ବୋହୂମାନଙ୍କ ପ୍ରତି ନିର୍ମମ ବ୍ୟବହାର ଓ ଅବହେଳା ଯେ ସମାଜ ଜୀବନକୁ ବିଷାକ୍ତ କରିଦିଏ ଏ ବିଷୟରେ ସେ ସଚେତନ । ତେଣୁ ଅସହାୟା ନାରୀକୁ ପ୍ରଥମେ ଆତ୍ମନିର୍ଭରଶୀଳ ହେବାକୁ ପଡ଼ିବ । ଶିକ୍ଷା ହିଁ ନାରୀକୁ ସେ ସୁଯୋଗ ଦେଇପାରିବ ବୋଲି ତାଙ୍କର ମତ । ନାରୀର ସାଂଗଠନିକ ଶକ୍ତି ଉତ୍ତମ ଭାବରେ ଉପଯୋଗ ହୋଇପାରିଲେ ହିଁ ସମାଜରୁ ଅନ୍ଧବିଶ୍ୱାସ ଦୂର ହୋଇପାରିବ ।

ଯେତିକି ଅନୁଷ୍ଠାନିକ ଶିକ୍ଷା ସେ ପାଇଛନ୍ତି ସେତିକିରେ ସନ୍ତୁଷ୍ଟ ହୋଇ ପାରିନାହାନ୍ତି । ସେଥିପାଇଁ ସେ ସ୍ୱର୍ଗତା ଜନନୀଙ୍କ ମୃତ୍ୟୁକୁ ହିଁ ମୁଖ୍ୟକାରଣ ଭାବରେ ଗ୍ରହଣ କରିଛନ୍ତି । ପିତାଙ୍କର ଅବାଧ ହୋଇ ସେ ଦୁଃଖିତା ନୁହଁନ୍ତି ମାତ୍ର ପିତାମହୀଙ୍କର ଅନ୍ତିମ କାଳରେ ତାଙ୍କର ସେବା କରିପାରି ନଥିବାରୁ ଅପରାଧବୋଧରେ ଜଡ଼ସଡ଼ ହୋଇଛନ୍ତି । ଗୋଟିଏ ହାତରେ ସଂଗଠନ ଓ ଅନ୍ୟହାତରେ ଅସହଯୋଗର କର୍ତ୍ତବ୍ୟ ଧରି ଚାଲୁଚାଲୁ ନିଜ ସମୟ ପାଇଁ ସେ ଆଲୋକ ବର୍ତ୍ତିକାରେ ହିଁ ରୂପାନ୍ତରିତ ହୋଇଯାଉଛନ୍ତି ।

ଯଦି ସେ ଚାହିଁଥାଆନ୍ତେ ତେବେ ପୁଣ୍ୟସ୍ମୃତିରୁ ଖିଏ ନ କାଢ଼ି ସେ ପୁଣ୍ୟସ୍ମୃତିରୁ ସବୁତକ ଖିଅ କାଢ଼ି ପାଠକମାନଙ୍କୁ ପ୍ରଦାନ କରିପାରିଥାଆନ୍ତେ । ତାଙ୍କର ଶୈଳୀ ଏଭଳି ଅନ୍ତରଙ୍ଗତାରେ ଭରା ଯେ ପାଠକ ଥରେ ପାଠ କରିବା ଆରମ୍ଭ କଲେ ଶେଷ ନକରି ରହିପାରେ ନାହିଁ । ସ୍ୱାଧୀନତାର ସୁବର୍ଣ୍ଣଜୟନ୍ତୀ ଅବସରରେ, ଏତାଦୃଶ ଜ୍ୟୋତିଷ୍ମତୀ ନକ୍ଷତ୍ରଙ୍କର ଆଲୋକର ଉଷ୍ମତାରେ ପାଠକଙ୍କୁ ଆତ୍ମବିଶ୍ୱାସ ଦେବାପାଇଁ' ହୋଇଥିବା ଏହି ଉଦ୍ୟମ ବାସ୍ତବିକ ଅଭିନନ୍ଦନୀୟ ।



*ପ୍ରାଧ୍ୟାପିକା,*

*ସ୍ନାତକୋତ୍ତର ଓଡ଼ିଆ ବିଭାଗ, ଉତ୍କଳ ବିଶ୍ୱବିଦ୍ୟାଳୟ*

# ଗୋଦାବରୀ ଦେବୀ :
# ସରଳ ନିରଳସ ସାମାଜିକ କର୍ମୀ

**ମୃତ୍ୟୁଞ୍ଜୟ ପରିଡ଼ା**

ଗତ ୧୯୯୩ ଜୁନ୍ ୩୦ ତାରିଖ ସଂଧ୍ୟାରେ ବାଲେଶ୍ୱର ସହରର ଗୋପାଳ ଗାଁ ଠାରେ ଗୋଦାବରୀ ଅପାଙ୍କର ପରଲୋକ ହୋଇଯାଇଛି । ଆମ ଓଡ଼ିଶାର ଯେଉଁ କେତେ ମୁଷ୍ଟିମେୟ ନବଦମ୍ପତି ଭାରତଛାଡ଼ ଆନ୍ଦୋଳନରେ 'କର ବା ମର' ଶପଥ ନେଇ ବିପ୍ଳବର ଯଜ୍ଞବେଦୀ ତଳେ ନିଜ ନିଜକୁ ସମ୍ପୂର୍ଣ୍ଣ ରୂପେ କାୟୋ ମନୋବାକ୍ୟରେ ସମର୍ପି ଦେଇଥିଲେ ଗୋଦାବରୀ ଅପା ଓ ରବି ଭାଇ (ରବୀନ୍ଦ୍ର ମୋହନ ଦାସ) ସେମାନଙ୍କ ମଧ୍ୟରେ ଅନ୍ୟତମ ।

ହିନ୍ଦୁ ସଂସ୍କାର ଅନୁସାରେ ପୁନର୍ଜନ୍ମ ଅଛି ଓ ବିବର୍ତ୍ତନକୁ ସ୍ୱୀକାର କଲେ, ସେ ପୁଣି ମଣିଷ ହୋଇ ଜନ୍ମହେବ । ମାତ୍ର ଯେ ଗଲା ତା' କଥା ଆମପାଇଁ ସେଇଠି ସରିଲା । ବାକି ଆମେ ଯେଉଁମାନେ ରହିଲୁ, ଆମ ଆଖିରେ ରହିଲା ଖାଲି ଲୁହ ଆଉ ଅନେକ ଅକୁହା କଥା, ଯାହାକି ଆଉ କେବେ ତାକୁ କହିହେବ ନାହିଁ ।

ମୃତ୍ୟୁର ଠିକ୍ ୧୬ ଦିନ ପୂର୍ବେ ପହିଲି ରଜ ସଂଧ୍ୟାରେ ତା ପାଖରେ ବସି ତାର ଶୀର୍ଣ୍ଣ ହାତରେ ହାତ ବୁଲାଉଥିଲା ବେଳେ ସେ ମତେ କହିଥିଲା, ''ମତେ କହୁଛନ୍ତି ଦିଲ୍ଲୀ ଯାଇ ରବିର (ଜୋଉଁ) ପିଲାଙ୍କୁ ଦେଖାଶୁଣା କରିବି । ମତେ ତ' ଦିଶୁନାହିଁ । ଫୁଣ୍ଟୁ ତ ଚାଲିଗଲା । ଆଉ ରବି ଉପରେ ବୋଝ ହେବପାଇଁ ଇଚ୍ଛା ନାହିଁ ।'' ସାଂଧା ସିଧା କଥା ଦିଂପଦ ! କିନ୍ତୁ ଏତେ ଶୀଘ୍ର ଏତେ ନିଷ୍ଠୁର ସତ୍ୟ ଭାବରେ ଘଟିଯିବ, କଳ୍ପନା ବି କରିନଥିଲି । ରବି ଭାଇ ଜିଦ୍ ଧରିଥିଲେ ରାତିଟା ରହିଯିବା ପାଇଁ । ରହିନଥିଲି । ଆଜି ଅବଶୋଷ ହେଉଛି, ସେଦିନ ତାଙ୍କ କଥା କାହିଁକି ମାନିଲି ନାହିଁ ଭାବିକରି ।

ହାଇସ୍କୁଲରେ ପଢ଼ିଲାବେଳେ ୩ଟି ପ୍ରବାଦ ଶୁଣିଥିଲି । ୧. କଟକୀ କରଣ, ଭଦ୍ରଖୀ ପଠାଣ ଓ ଯାଜପୁର ସର୍ବ-ସାଧାରଣ, ୨. କଟକୀ କରଣ, ଆନନ୍ଦପୁରିଆ ପାଣ ଓ ଯାଜପୁର ସର୍ବ-ସାଧାରଣ, ୩. କଟକୀ କରଣ, ଫୁଲବାଣୀ ପାଣ ଓ ଯାଜପୁର ସର୍ବ-ସାଧାରଣ । ଏମାନଙ୍କୁ ବ୍ରହ୍ମା, ବିଷ୍ଣୁ କେହି ପାରିବେ ନାହିଁ । କଲ୍ୟାଣପୁର (ସେ ବେଳର କଟକ ଜିଲ୍ଲା ଓ

ଏବେ ଯାଜପୁର ଜିଲ୍ଲା)ର କରଣଘର ଝିଅ ଗୋଦାବରୀ ଅର୍ଦ୍ଧ ଶତାବ୍ଦୀ ପୂର୍ବେ ପିନ୍ଧିଥିବା ଶାଢ଼ୀ ଆଉ ହାତରେ ଚାରିପଟକେରି ପାଣିକାଚ ପିନ୍ଧି ଘରୁ ଚାଲି ଆସିଲା ଯେ ଆଉ ଫେରିଲା ନାହିଁ । ବାହାହେଲେ, ସିନ୍ଦୂର ପିନ୍ଧିଲେ ବା ଅଳତା ଲଗାଇଲେ ସୁନ୍ଦର ଦେଖାଯାଏ ଭାବିବାପାଇଁ ଏ ଜୀବନରେ ଅବସର ମିଳିଲା ନାହିଁ । ଜୀବନ ଦୀପ ଲିଭିବା ଯାଏ ଜ୍ୟୋତି ବିକିରଣ କରି କରି ଚାଲିଗଲା । ପଛରେ ରହିଗଲେ ମୋ ପରି ଅନେକ ଲୋକ ଯେଉଁମାନେ କି ଅବଶିଷ୍ଟ ଜୀବନ ପାଇଁ ଖାଲି ଝୁରିହେବେ ।

ମହାନ୍ ମଣିଷ ବା ମହୀୟସୀ ନାରୀର ଅନେକ ପ୍ରକାର ସଂଜ୍ଞା ପଣ୍ଡିତମାନେ କରିଛନ୍ତି । ମୁଁ ସେ ସବୁର ଧାର ଧାରେନାହିଁ । ମୋ ପାଇଁ ସେ ହିଁ ମହୀୟାନ ବା ମହୀୟସୀ, ଯାହା ପାଖରେ ମୁଁ ପିଲାଙ୍କ ଭଳି ସରଳ ହୋଇପାରିବି ଏବଂ ମୋର ସମସ୍ତ ଦୋଷ ଦୁର୍ବଳତା, ଭଲମନ୍ଦ ଲୁଚାଇବା ପାଇଁ ଚାହିଁବି ନାହିଁ । ଅନ୍ୟ ଭାଷାରେ କହିଲେ ଯିଏ ବଡ଼ ହେଲେ ମଧ୍ୟ ମୋ ମନ ଭିତରେ କୌଣସି ନ୍ୟୂନ ଭାବ ଆଣି ଦିଅନ୍ତି ନାହିଁ । ସେ ହେଲେ ମୋ ପାଇଁ ପ୍ରକୃତ ବଡ଼ ଲୋକ । ଗୋଦାବରୀ ଅପା ଏଇ ଧରଣର ଜଣେ ନାରୀ ଥିଲେ ।

୧୯୫୯ ମସିହା କଥା । ଚାକିରି ୨/୩ ବର୍ଷ ହୋଇଥାଏ । ଟୁଣ୍ଟୁ ଓ ଫୁଣ୍ଟୁଙ୍କର ବୟସ ବୋଧହୁଏ ୮/୧୦ବର୍ଷ ହେବ । ବାଲେଶ୍ୱର କଲେକ୍ଟରେଟରେ ଯୋଗଦେଇ ସିଧା ଗୋପାଳଗାଁ ଗଲି । ଅପା ମୋତେ ଦେଖି କହିଲା, ''କୁଆଡ଼େ ଆସିଲୁ ?'' ମୁଁ କହିଲି, ଏଇଠି କଚେରୀ (କଲେକ୍ଟରେଟ)ରେ ଚାକିରିରେ ଯୋଗ ଦେଇଛି । ''ସରକାର ତୋ'ପରି ଘର ପୋଡ଼ିଆଙ୍କୁ ଚାକିରିରେ ରଖିଛି କାହିଁକି '' ବାସ୍ ସେତିକି ।

ତା'ପରେ ଯେତେବେଳେ ଅବସର ପାଏ ତା ପାଖକୁ ଯାଏ । ପାଖରେ ବସି ଦହି ପଖାଳ, କେତେ ରକମର ଭଜା ମଜାରେ ଖାଏ ଏବଂ ବିନୋବାଭାବେ ଓ ଗୋପବନ୍ଧୁ ଚୌଧୁରୀଙ୍କ ପରିବାରକୁ ଗାଳିକରେ । ଛୋଟଛୁଆ ପରି ଚାରିଆଡ଼େ ରୋଷେଇ ଘର ଠାରୁ ଗୁହାଳ ପର୍ଯ୍ୟନ୍ତ ଗୋଡ଼େଇଲା ପରି ଯାଏ ଏବଂ ସେଇପରି ବିନୋବାଭାବେ, ରମାଦେବୀ ଆଦିଙ୍କୁ ଭୀଷଣ ଗାଳିକରେ, ଯେପରି କି ସେ ମତେ କିଛି କଟୁକଥା କହିବ । ସେ ମତେ କହେ, ''ତୁ ସେ ପୋଡ଼ାମୁହାଁ, ଲୋହିଆ ସାଙ୍ଗରେ ପଡ଼ି ନଷ୍ଟ ହୋଇଗଲୁଣି । ରବି (ରବିଭାଇ) ଯେପରି ଜୟପ୍ରକାଶ ପଛରେ ଗୋଡ଼େଇ ଗୋଡ଼େଇ ଦିନ ସରୁନାହିଁ, ତୁ ବି ସେମିତି ସେ ପୋଡ଼ାମୁହାଁ ଲୋହିଆ ସାଙ୍ଗରେ ପଡ଼ି ତୋର ଦିନ ସରୁନାହିଁ । ତୁ ସେ ଲୋହିଆ ସାଙ୍ଗ ଛାଡ଼ ।''

ଗୋଦାବରୀ ଅପାର ଶିକ୍ଷା ସେପରି ବେଶୀ ନଥିଲା । ମାତ୍ର ସେ ନିଜ ଚେଷ୍ଟାବଳରେ ଏବଂ ରମାଦେବୀଙ୍କର ସଯତ୍ନ ଲାଳନପାଳନରେ ନିଜେ ଜଣେ ଭଲ ରଚନାତ୍ମକ କର୍ମୀ ଓ

ସମାଜସେବିକା ହୋଇପାରିଥିଲା । ସେ ଜଣେ ସୁ-ସାହିତ୍ୟିକା ମଧ୍ୟ ହୋଇପାରିଥିଲା । ସାମାଜିକ ସ୍ୱୀକୃତି ବି ମିଳିଥିଲା । ଏହା ଓଡ଼ିଶାର ନାରୀ ଜାତି ପାଇଁ ବେଶ୍ ଗୌରବର କଥା ।

ରବିଭାଇ ସମାଜବାଦୀ ହେଲେ ମଧ୍ୟ ସେ କେବେ ହେଲେ ତାଙ୍କ ବାଟରେ ବାଧା ହୋଇ ଛିଡ଼ା ହୋଇନାହିଁ । ରବିଭାଇ ନଥିଲାବେଳେ କହେ, ''କୁଆଡ଼େ ଗଲେ ଯେ ଗଲେ, ଆଉ ଦେଖାନାହିଁ । ରାତିରେ ଆସିବେ (ବସ୍‌ରେ) କାଳେ ସମୟ ନଷ୍ଟ ହୋଇଯିବ ସେଇଥିପାଇଁ । ସକାଳ ହେଲେ ପୁଣି କୁଆଡ଼େ କାମରେ ପାଇ । ଦେଖିବାକୁ ମିଳିବେ ନାହିଁ ।'' ଅଥଚ ସେ (ରବିଭାଇ) କେଉଁଠି ରହିଲେ, କ'ଣ ଖାଇଲେ ଇତ୍ୟାଦି ସବୁ ଖବର ରଖୁଥିବ । 'ଅପା ତୁ ତ' ଚାଲିଗଲୁ । ଏବେ ରବିଭାଇଙ୍କ ଖବର ବୁଝିବ କିଏ' ?



# ପୂଜ୍ୟା ଗୋଦାବରୀ

ଶିଶିର କୁମାର ଆଚାର୍ଯ୍ୟ

ଆଜକୁ ୮୦ବର୍ଷ ତଳର ଘଟଣା । ସେତେବେଳେ ସାମାଜିକ ପରିବେଶ ଖୁବ୍ ଜଟିଳ । ଅଶିକ୍ଷା, ଅସ୍ପୃଶ୍ୟତା, ଅନୀତି, ଅତ୍ୟାଚାର ଘରେ ବାହାରେ ଦେଶରେ ସର୍ବତ୍ର ବ୍ୟାପି ରହିଥିଲା । ଏହା ବିରୁଦ୍ଧରେ ମହାତ୍ମା ଗାନ୍ଧୀଙ୍କ ଡାକରା- ସ୍ୱାଧୀନତା ସଂଗ୍ରାମର ଆହ୍ୱାନ । ଏହି ଆହ୍ୱାନ କଟକ ଜିଲ୍ଲାର କଲ୍ୟାଣପୁର ଗ୍ରାମରେ ଜନ୍ମନେଇଥିବା ୧୩ ବର୍ଷର ବାଳିକା ଗୋଦାବରୀର କର୍ଣ୍ଣଗହ୍ୱରରେ ପ୍ରବେଶ କଲା - ମନ ଚଞ୍ଚଳ ହୋଇ ଉଠିଲା । ପ୍ରତିଜ୍ଞାବଦ୍ଧ ହେଲା ସ୍ୱାଧୀନତା ସଂଗ୍ରାମରେ ଝାସ ଦେବ । ସେତେବେଳର କଟକଣା- ପିତାଙ୍କର ପ୍ରବଳ ଆକଟ ଗ୍ରାମବାସୀମାନଙ୍କର ଭ୍ରୂକୁଞ୍ଚନକୁ ପଛରେ ପକାଇ ଆଗେଇଗଲା ଗୋଦାବରୀ । ଝିଅମାନଙ୍କର ପାଠପଢ଼ା ନିଷେଧ-୩ୟ ଶ୍ରେଣୀରୁ ପାଠପଢ଼ା ବନ୍ଦ ହୋଇଗଲା ଗୋଦାବରୀର । ଅକ୍ଳାନ୍ତ ପରିଶ୍ରମ, ଅଧ୍ୟବସାୟ, ଆବେଗ ଯୋଗୁ ଭବିଷ୍ୟତ ଜୀବନରେ ଇଂରାଜୀ, ଓଡ଼ିଆ, ବଙ୍ଗଳା, ହିନ୍ଦୀ ଭାଷାକୁ ଅକ୍ତିଆର କରି ପାରିଥିଲେ । ପରିଣତ ବୟସରେ ତାଙ୍କ ଲିଖିତ ''ପୁଣ୍ୟସ୍ମୃତିରୁ ଖିଏ'' ଅସମାପ୍ତ ଲେଖା ପାଇଁ ମଧ୍ୟ ଓଡ଼ିଶା ସାହିତ୍ୟ ଏକାଡ଼େମୀ ପୁରସ୍କାର ପାଇ ପାରିଥିଲେ । ଆହୁରି ବହୁ ସମ୍ମାନ ଓ ପୁରସ୍କାରର ସେ ଅଧିକାରୀ ଥିଲେ । ଅସ୍ପୃଶ୍ୟତା ନିବାରଣ- ତାଙ୍କ ଜୀବନର ପଣ ଥିଲା । ଓଡ଼ିଶାରେ ଗାନ୍ଧିଜୀଙ୍କ ହରିଜନ ପଦଯାତ୍ରାରେ ସେ ୧୭ ବର୍ଷ ବୟସରେ ଯୋଗଦେଇ ଅଗ୍ରଣୀ ଭୂମିକା ଗ୍ରହଣ କରିଥିଲେ । ଗାନ୍ଧିଜୀଙ୍କ ଇଚ୍ଛାରେ ଗୋଦାବରୀ ହୋଇଥିଲେ ଓଡ଼ିଆ ଶିଖାଇବା ପାଇଁ ଗାନ୍ଧିଜୀଙ୍କର ଶିକ୍ଷୟିତ୍ରୀ । ଗାନ୍ଧିଜୀଙ୍କ ''କୁଟି ଖାଇବା, କାଟି ପିନ୍ଧିବା'' ଆହ୍ୱାନକୁ ଜୀବନର ଶେଷ ଦିନଯାଏ ଶକ୍ତି ଥିବା ପର୍ଯ୍ୟନ୍ତ ପ୍ରତ୍ୟହ ସୂତାକାଟି ସେ ପାଳନ କରିଥିଲେ । ସ୍ୱାଧୀନତା ଆନ୍ଦୋଳନରେ ସେ ଝାସଦେଇ କାରାବରଣ କରି ମହିଳାମାନଙ୍କ ମଧ୍ୟରେ ଏକ ଜାଗରଣ ସୃଷ୍ଟି କରି ପାରିଥିଲେ । ଗାନ୍ଧୀ, ଜୟପ୍ରକାଶ, ଉତ୍କଳମଣି, ମା' ରମାଦେବୀ, ଗୋପବନ୍ଧୁ ଚୌଧୁରୀ ପ୍ରମୁଖଙ୍କର ସେ ପୂର୍ଣ୍ଣ ସମର୍ଥକ ଥାଇ ନିଜକୁ ଜଣେ ସଚ୍ଚା ଗାନ୍ଧୀବାଦୀ ବୋଲି ପ୍ରତିଷ୍ଠିତ

କରିପାରିଥିଲେ । ସେ ଜନ୍ମ ଗ୍ରହଣ କରିଥିଲେ ୧୯୧୭ ମସିହା ଗାନ୍ଧୀଜୟନ୍ତୀ ଅକ୍ଟୋବର ୨ ତାରିଖରେ । ୨୮ବର୍ଷ ବୟସରେ ସ୍ୱାମୀରୂପେ ଗ୍ରହଣକରିଥିଲେ ବିଶିଷ୍ଟ ସମାଜବାଦୀ ନେତା, ସମାଜ ସଂସ୍କାରକ, ବରିଷ୍ଠ ବିଶିଷ୍ଟ ବିଧାୟକ ରବୀନ୍ଦ୍ର ମୋହନ ଦାସଙ୍କୁ । ଆମ ସମସ୍ତଙ୍କର 'ଦେଈ' ପୂଜ୍ୟା ଗୋଦାବରୀ ଦେବୀ ୧୯୯୩ ମସିହା ଜୁନ୍‌ମାସ ୩୦ ତାରିଖରେ ଆମ୍ଭମାନଙ୍କୁ ଶୋକ ସାଗରରେ ଭସାଇ ଦେଇ ପରଲୋକ ଗମନ କରିଛନ୍ତି । ତାଙ୍କର ୨ଝିଅଙ୍କ ମଧ୍ୟରୁ ବଡ଼ଝିଅ ଯଶୋଧାରା ଜଣେ ଅଧ୍ୟାପିକା ଓ ନାରୀନେତ୍ରୀ, ସାନଝିଅ କୀର୍ତ୍ତିଧାରାଙ୍କର ଅକାଳରେ ବିୟୋଗ ହୋଇଯାଇଛି । ବଡ଼ଜ୍ୱାଇଁ ବିଭୂପଦ ମହାନ୍ତି ବରିଷ୍ଠ ଇଂଜିନିୟର ଓ ସାନଜ୍ୱାଇଁ ରବି ନାରାୟଣ ଦାସ କେନ୍ଦ୍ର ସରକାରଙ୍କର ଜଣେ ଉଚ୍ଚ ପାହ୍ୟାର ସରକାରୀ ଅଫିସର ।

ପୂଜ୍ୟା ଗୋଦାବରୀ ଦେବୀ ଆଜି ନାହାନ୍ତି, କିନ୍ତୁ ତାଙ୍କର ସାଧନା, ପ୍ରେରଣା, ଆଦର୍ଶ ସମସ୍ତଙ୍କୁ ଉଦ୍‌ବୁଦ୍ଧ କରୁଛି । ତାଙ୍କର ଆତ୍ମା ସ୍ୱର୍ଗରେ ଶାନ୍ତି ଲାଭ କରୁ ଏବଂ ତାଙ୍କର ଆଶୀର୍ବାଦ ଆମ ଉପରେ ଝରିପଡୁ ଭଗବାନଙ୍କ ଠାରେ ପ୍ରାର୍ଥନା ।



# ଗୋଦାବରୀ ଦେବୀଙ୍କ ବିୟୋଗରେ

ମିହିର କୁମାର ଆଚାର୍ଯ୍ୟ

ଆଜକୁ ପ୍ରାୟ ୨୫ବର୍ଷ ତଳର ଘଟଣା । ୧୯୬୮ ମସିହାର ଏକ ଶୀତକାଳୀନ ମଧ୍ୟାହ୍ନ । ଯାଇଥାଏ ରବିଭାଇ (ଶ୍ରୀ ରବୀନ୍ଦ୍ରମୋହନ ଦାସ )ଙ୍କ ଘରକୁ । ଖରାପିଠିଆ ହୋଇ ମାତୃ ପ୍ରତିମ ଗୋଦାବରୀ ଦେବୀ ସୂତା କାଟିବାରେ ବ୍ୟସ୍ତ । ଆମେସବୁ ତାଙ୍କୁ 'ଦେଈ' ବୋଲି ଡାକୁଥିଲୁଁ । ପାଖରେ ବସିଲି । ସୂତାକଟା ସମ୍ପର୍କରେ ଆଲୋଚନା ଚାଲିଲା । ସୂତାକଟାର ତତ୍ତ୍ୱ, ମହତ୍ୱ, ତାଙ୍କର ଅଭିଜ୍ଞତା, ସୂତାକଟାରୁ ପ୍ରେରଣା, ଅର୍ଥନୈତିକ ପରିସ୍ଥିତି, ଗାନ୍ଧୀ ଗୋପବନ୍ଧୁ ବିନୋବାଙ୍କ ମତାମତ ସମ୍ପର୍କରେ ଏକପ୍ରକାର ଗୋଟିଏ କ୍ଲାସ ନେଲେ ସେ । ଅବଶ୍ୟ ସେ କ୍ଲାସରେ ଏକମାତ୍ର ଛାତ୍ର ଥିଲି ମୁଁ । ମୁଁ ଖଦଡ଼ ପିନ୍ଧୁଥିଲି । ଦେଶର ରାଜନୈତିକ ପରସ୍ଥିତିରେ ଖଦଡ଼ ପ୍ରତି ଏକ ଘୃଣାଭାବ ଜାତ ହୋଇଥିଲା । କିନ୍ତୁ ସେ ଦିନର ପ୍ରେରଣାରେ ଖଦଡ଼ ପ୍ରତି ଯେଉଁ ବିତୃଷ୍ଣା ଭାବ ଆସୁଥିଲା, ତା' ପରିବର୍ତ୍ତନ ହୋଇ ପୂରାପୂରି ଖଦଡ଼ିଆ ପାଲଟିଗଲି । ରୁମାଲ ଠାରୁ ଧୋତି, ବିଛଣାଠାରୁ ଗାମୁଛା ପର୍ଯ୍ୟନ୍ତ ସବୁ ଖଦଡ଼ ପାଲଟି ଯାଇଛି । ଦେଈ ଓ ମୋ ମଧ୍ୟରେ ପାର୍ଥକ୍ୟ ଥିଲା, ସେ କାଟି ପିନ୍ଧୁଥିଲେ, ମୁଁ କିଣିପିନ୍ଧୁଥିଲି । ପରେ ସରକାରୀ ଦଳ ଓ ସରକାରୀ କଳର ଆନ୍ତରିକତା ଅଭାବରେ ଖଦଡ଼ର ପ୍ରସାର ପାଇଁ ଉଦ୍ୟମ ହେଲା ନାହିଁ କି ସୂତା କାଟିବା ପାଇଁ ବଇଣା ମିଳିଲା ନାହିଁ । ଶେଷରେ ସେ ମଧ୍ୟ ଅନ୍ୟ ମାନଙ୍କ ଭଳି କିଣି ପିନ୍ଧିଲେ । କିନ୍ତୁ ସେ କାର୍ଯ୍ୟକ୍ଷମ ଥିବା ପର୍ଯ୍ୟନ୍ତ ପ୍ରତ୍ୟହ ସୂତାକଟା କାର୍ଯ୍ୟ କରୁଥିଲେ ।

ସୂତାକଟାରୁ ଆରମ୍ଭ ହେଲା ପ୍ରାକ୍‌ସ୍ୱାଧୀନତା ସମୟର ରାଜନୀତି, ସଂଘର୍ଷ, ଆଦର୍ଶ ଓ ପରବର୍ତ୍ତୀ ରାଜନୈତିକ ଅବସ୍ଥାର ଆଲୋଚନା । ସେ କହି ଚାଲିଥିଲେ ତାଙ୍କର ସଂଘର୍ଷମୟ ଜୀବନର ଆଲେଖ୍ୟ । ସେସବୁ ଯେପରି ରୋମାଞ୍ଚକର, ସେହିପରି ଶିକ୍ଷଣୀୟ । ଖୁବ୍ ଭଲ ଲାଗିଲା । କହିଲି, ଦେଈ, ଏସବୁ ଇତିହାସକୁ ଲେଖ, ବହି ଆକାରରେ ଛାପିବା, ଭବିଷ୍ୟତରେ ଏହାର ମୂଲ୍ୟ ଅଛି । ସେ ଉତ୍ସାହିତ ହେଲେ । କହିଲେ, ମୁଁ ଲେଖିବି ସିନା କିନ୍ତୁ ସଂଶୋଧନ ତୁମେ କରିବ ଓ ପ୍ରକାଶ କରିବାର ଦାୟିତ୍ୱ ନେବ । ତୁମେ ତ ସାମ୍ବାଦିକ ସଜଡ଼ାସଜଡ଼ି କରି କାଣ୍ଡ ଛାଣ୍ଡ କରି ଲେଖି ପାରିବ । ମୁଁ ସମ୍ମତି ଦେଲି ।

ପ୍ରାୟ ଗୋଟିଏ ସପ୍ତାହ ପରେ ଡାକରା ଆସିଲା ଦେଈଙ୍କ ଠାରୁ । ସେ କହିଲେ ତୁମେ ଏଡ଼ିକି ଠକ ମୁଁ ଲେଖା ଆରମ୍ଭ କରିଛି ତୁମେ ତ ଦେଖିଲ ନାହିଁ । ଜୀବନରେ ଯେଉଁ ଦାୟିତ୍ୱ ନେବ, ତାହା କମ୍ ବେଶୀ ହେଲେ ମଧ ପୂରଣ କରିବ । ଭାବିଲି, ସେଦିନ ସିନା ଯୁବକ ସୁଲଭ ଚପଳତାର ବଶବର୍ତ୍ତୀ ହୋଇ ଭାବାବେଶରେ 'ହଁ' କରି ଦାୟିତ୍ୱ ନେଇଥିଲି କିନ୍ତୁ ତାକୁ କାର୍ଯ୍ୟକାରୀ କରିବା ଯେପରି ସମୟ ସାପେକ୍ଷ, ସେହିପରି କଷ୍ଟକର ବ୍ୟାପାର । ଲେଖା ପଢ଼ିଲି । ମୋର ସୀମିତ ଜ୍ଞାନ ତା' ଭିତରେ ବୁଡ଼ିଗଲା । ମୁଁ ସଂଶୋଧନ କରିବି କ'ଣ କହିଲି, 'ଚମତ୍କାର ହୋଇଛି- ସଂଶୋଧନର ଆବଶ୍ୟକତା ନାହିଁ । ଆପଣ ଲେଖି ଯାଆନ୍ତୁ, ପ୍ରକାଶ କିପରି ହେବ ଚେଷ୍ଟା କରିବି ।'

ମୁଁ ସେତେବେଳେ 'ପ୍ରଜାତନ୍ତ୍ର'ର ଜିଲ୍ଲା ପ୍ରତିନିଧି । ମୋର ଅର୍ଥାତ୍ ପ୍ରଜାତନ୍ତ୍ରର ସମ୍ପାଦକ ହେଉଛନ୍ତି ସ୍ୱର୍ଗତ ଶ୍ରୀହର୍ଷ ମିଶ୍ର । କୌଣସି ଏକ ଅନୁଷ୍ଠାନରେ ଯୋଗ ଦେବା ପାଇଁ ସେ ବାଲେଶ୍ୱର ଆସିଥିଲେ । ଆମ ଘରେ ଖାଇବସିଲା ବେଳେ କହିଲି ଗୋଦାବରୀ ଦେବୀ ଏକ ଲେଖା ଲେଖିଛନ୍ତି, ତାକୁ କିଭଳି ପ୍ରକାଶ କରିବା । ଟିକିଏ ବଡ଼ ହୋଇଯାଇଛି । ସେ କହିଲେ, ଲେଖାଟି ଦେଖାଇବ । ତା' ପରଦିନ ଯେତିକି 'ଦେଈ' ଲେଖିଥିଲେ, ତାଙ୍କୁ ଦେଖାଇଲି । ଶ୍ରୀହର୍ଷବାବୁ ବଡ଼ ତାରିଫ୍ କଲେ ଓ ମତେ କହିଲେ ଏ ବିଷୟରେ ତୁମେ ଟିକିଏ ମହତାବଙ୍କୀଙ୍କୁ କହିବ । ମୁଁ କଟକ ଯାଇ ଏ ବିଷୟରେ ମହତାବଙ୍କୀଙ୍କୁ କହିଲି ଓ ଲେଖା ଦେଖାଇଲି । ସେ ଅନୁମତି ଦେଲେ । ସେତେବେଳେ ଗାନ୍ଧିଜୀଙ୍କ ଶତବାର୍ଷିକୀ ଉପଲକ୍ଷେ 'ପ୍ରଜାତନ୍ତ୍ର'ରେ ପ୍ରତି ଶୁକ୍ରବାର ଦିନ ''ଗାନ୍ଧୀବିଚାର'' ପୃଷ୍ଠା ପ୍ରକାଶ ପାଉଥାଏ । ''ପୁଣ୍ୟସ୍ମୃତିରୁ ଖିଏ'' ଶିରୋନାମାରେ ଗୋଦାବରୀ ଦେବୀଙ୍କ ନାମରେ ଗାନ୍ଧୀବିଚାର ପୃଷ୍ଠାରେ ତା ୧୩.୧୨.୬୮ ରେ ପ୍ରଥମ ଲେଖା ପ୍ରକାଶ ପାଇଲା । ତା' ପରେ ଧାରାବାହିକ ଭାବରେ ସେହି ପୃଷ୍ଠାରେ ତା ୪.୪.୬୯ ପର୍ଯ୍ୟନ୍ତ ''ପୁଣ୍ୟସ୍ମୃତିରୁ ଖିଏ'' ପ୍ରକାଶ ପାଇଲା । ତା'ପରେ ନାନା କାରଣରୁ ତାହା ଆଉ ପ୍ରକାଶ ପାଇନଥିଲା । ଯେତିକି ପ୍ରକାଶିତ ହୋଇଥିଲା ତାହା ଓଡ଼ିଶାର ପ୍ରାକ୍ ସ୍ୱାଧୀନତା ଯୁଗର ବହୁ ଅକୁହା କଥା ଲୋକଲୋଚନକୁ ଆଣିଥିଲା । ଯାହାଫଳରେ ସେହି ଆଂଶିକ ପ୍ରକାଶିତ ଲେଖା ଉପରେ ହିଁ ସେ ଓଡ଼ିଶାର ସମ୍ମାନଜନକ ସାହିତ୍ୟ ଏକାଡ଼େମୀ ପୁରସ୍କାର ଓ ପରେ 'ନୀଳଶୈଳ'. ତରଫରୁ ସ୍ୱତନ୍ତ୍ର ପୁରସ୍କାର ପାଇଥିଲେ । ଏହି ପୁରସ୍କାର ପ୍ରାପ୍ତି ପାଇଁ 'ପ୍ରଜାତନ୍ତ୍ର'ର ଅବଦାନ ବିଷୟରେ ସେ ସବୁବେଳେ ପ୍ରଜାତନ୍ତ୍ରର ପ୍ରଶଂସା କରୁଥିଲେ ।

ଓଡ଼ିଶାର ବିଶିଷ୍ଟ ନାରୀନେତ୍ରୀ, ସ୍ୱାଧୀନତା ସଂଗ୍ରାମୀ ମାତୃପ୍ରତିମ ଶ୍ରୀମତୀ ଗୋଦାବରୀ ଦେବୀଙ୍କର ୭୯ବର୍ଷ ବୟସରେ ୧୯୯୩ ମସିହା ଜୁନ୍ ୩୦ ତାରିଖ ଦିନ ପରଲୋକ ହୋଇଯାଇଛି । କଟକ ଜିଲ୍ଲାର ବିଞ୍ଝାରପୁର ଅଞ୍ଚଳର କଲ୍ୟାଣପୁର ଗ୍ରାମର ଏକ

ସମ୍ଭ୍ରାନ୍ତ କରଣ ପରିବାରରେ ଜନ୍ମ ଗ୍ରହଣ କରି ମଧ୍ୟ ତତ୍କାଳୀନ ସାମାଜିକ ବ୍ୟବସ୍ଥା ଓ ପିତାଙ୍କର ଆକଟ ଫଳରେ ୩ୟ ଶ୍ରେଣୀରୁ ତାଙ୍କର ଲେଖାପଢ଼ା ବନ୍ଦ ହୋଇଯାଇଥିଲେ ସୁଦ୍ଧା ନିଜର ଅଧ୍ୟବସାୟ ଜ୍ଞାନପିପାସ ଯୋଗୁଁ ପରବର୍ତ୍ତୀ କାଳରେ ସେ ଜଣେ ସୁଲେଖିକା ଓ ବକ୍ତା ଭାବରେ ନିଜକୁ ପ୍ରତିଷ୍ଠିତ କରିପାରିଥିଲେ । ୧୩ବର୍ଷ ବୟସରୁ ସେ ଗାନ୍ଧୀଜୀଙ୍କ ସ୍ୱାଧୀନତା ସଂଗ୍ରାମ ପ୍ରତି ଆକୃଷ୍ଟ ହୋଇ ୧୬ ବର୍ଷ ବୟସରେ ନାନା ବାଧାବିଘ୍ନ ମଧ୍ୟରେ ସକ୍ରିୟ ଭାବରେ ସ୍ୱାଧୀନତା ଆନ୍ଦୋଳନରେ ଯୋଗ ଦେଇଥିଲେ । ବ୍ରିଟିଶ ଜେଲରେ କାରାବରଣ କରିଥିଲେ । ଗାନ୍ଧିଜୀଙ୍କ ଓଡ଼ିଶାରେ ହରିଜନ ପଦଯାତ୍ରାରେ ପୂରାପୂରି ସାମିଲ ହୋଇ ଅଗ୍ରଗଣ୍ୟ ନାରୀନେତ୍ରୀ ହିସାବରେ ନିଜକୁ ପ୍ରତିଷ୍ଠିତ କରିଥିଲେ । ଗାନ୍ଧୀ, ଗୋପବନ୍ଧୁ ଚୌଧୁରୀ, ନବକୃଷ୍ଣ ଚୌଧୁରୀ, ମାଳତୀ ଦେବୀ ପ୍ରଭୃତି ତାଙ୍କ ଜୀବନକୁ ବିଶେଷ ଭାବରେ ପ୍ରଭାବିତ କରିଥିଲେ । ୨୮ ବର୍ଷ ବୟସରେ ସେ ଓଡ଼ିଶାର ବିଶିଷ୍ଟ ସମାଜବାଦୀ ନେତା, ସ୍ୱାଧୀନତା ସଂଗ୍ରାମୀ, ସମାଜସେବକ ଶ୍ରୀଯୁକ୍ତ ରବୀନ୍ଦ୍ର ମୋହନ ଦାସଙ୍କୁ ବିବାହ କରି ଆନନ୍ଦିତ ହୋଇଥିଲେ । ସ୍ୱର୍ଗତା ଗୋଦାବରୀ ଦେବୀଙ୍କ ବିୟୋଗରେ ଓଡ଼ିଶାର ବହୁଲୋକ ଶୋକାଭିଭୂତ ।



# ସମାଜସେବୀ ଗୋଦାବରୀ ଦେବୀ

**ପ୍ରହ୍ଲାଦ ଚରଣ ମହାନ୍ତି**

ପ୍ରତିଭା ହେଉଛି ଏକ ଈଶ୍ୱର ଦତ୍ତ ସ୍ୱୟଂ ପ୍ରକାଶ ଗୁଣ । ଏହାର ଅଭ୍ୟୁତ୍‌ଥାନ ଓ ବ୍ୟାପକ ବିକାଶ ନିମନ୍ତେ କୌଣସି ବହିଃ ପ୍ରେରଣା ଓ ଉଦ୍‌ବୋଧନ ଆବଶ୍ୟକ ହୁଏ ନାହିଁ । ପୃଥିବୀର କଠିନ ଆଭରଣକୁ ଭେଦ କରି ବୀଜାଙ୍କୁର ସୂର୍ଯ୍ୟଙ୍କ ଆଡ଼କୁ ପ୍ରଭାବିତ ହେବା ପରି ପ୍ରତିଭା ସମସ୍ତ ବାଧାବିଘ୍ନ ଅତିକ୍ରମ କରି ସେବାଦି ସତ୍‌କର୍ମ ମାଧ୍ୟମରେ ମୁକ୍ତି ଆଡ଼କୁ ଗତି କରିଥାଏ । ସ୍ୱର୍ଗୀୟା ଗୋଦାବରୀ ଦେବୀ ସେହି ପରି ଏକ ପ୍ରତିଭାର ମୂର୍ତ୍ତିମନ୍ତ ଉଦାହରଣ ।

ଗୋଦାବରୀ ଦେବୀଙ୍କ ଉତ୍ସର୍ଗୀକୃତ ଜୀବନର ବହୁ ଅଧ୍ୟାୟ ଏ ପର୍ଯ୍ୟନ୍ତ ଉନ୍ମୋଚିତ ହୋଇ ପାରି ନାହିଁ । ସ୍ୱାଧୀନତା ଆନ୍ଦୋଳନରେ ଯୋଗ ଦେବା ପାଇଁ ମହାତ୍ମାଗାନ୍ଧୀ ଯେଉଁ ଆହ୍ୱାନ ଦେଇଥିଲେ ତାହା କାଶ୍ମୀର ଠାରୁ କୁମାରିକା ପର୍ଯ୍ୟନ୍ତ ଭାରତରେ ଆବାଳ ବୃଦ୍ଧ ବନିତାଙ୍କୁ ମନ୍ତ୍ର ମୁଗ୍ଧ କରିଥିଲା । ମାତ୍ର ପ୍ରତିଶୋଧ ପରାୟଣ ବ୍ରିଟିଶ ଶାସକଙ୍କ ରୋଷ କଷାୟିତ ନେତ୍ର, ସମାଜର ବାଧା ଓ ପାରିବାରିକ କୌଳିକ ତଥା ରକ୍ଷଣଶୀଳତା ଯୋଗୁ ବହୁ ଆଗ୍ରହୀ ଭାରତ ବାସୀ ଏହି ଆନ୍ଦୋଳନରେ ଯୋଗ ଦେବା ପାଇଁ ସାହସ କରି ନଥିଲେ । କିନ୍ତୁ ଗୋଟିଏ ରକ୍ଷଣଶୀଳ କୁଳୀନ କରଣ ବଂଶରେ ୧୯୧୭ ମସିହା ଅକ୍ଟୋବର ୨ ତାରିଖରେ ଜନ୍ମ ହୋଇଥିବା ମାତ୍ର ୧୪ ବର୍ଷର ଅନୂଢ଼ା ଝିଅ ଦେଶ ସେବା ପାଇଁ ପିତା, ମାତା, ପରିବାର, ସମସ୍ତ ମାୟାବନ୍ଧନ ଛିନ୍ନ କରି ଏହି ଆନ୍ଦୋଳନରେ ଯୋଗ ଦେଇ ଦେଶ ସେବା ନିମନ୍ତେ ବଦ୍ଧ ପରିକର ହେବା କମ୍ ଦୁଃସାହସର କଥା ନୁହେଁ । ୧୯୩୧ ମସିହାରେ ପୁରୀରେ ଜାତୀୟ କଂଗ୍ରେସର ଅଧିବେଶନ ବସିବାର ସ୍ଥିର ହୋଇଥାଏ । ଏହି ଅଧିବେଶନରେ ସ୍ୱୟଂ ସେବିକା ରୂପେ ଯୋଗ ଦେବାପାଇଁ ଗୋଦାବରୀ ଦେବୀଙ୍କ ଏକାନ୍ତ ଜିଦ୍ । ପିତା ତାଙ୍କୁ ବାରଣ କରନ୍ତେ ସେ ପିତାଙ୍କ ବିରୁଦ୍ଧରେ ଘରେ ସତ୍ୟାଗ୍ରହ କରିଥିଲେ । ଶେଷରେ ରମାଦେବୀ, ମାଳତୀ ଚୌଧୁରୀଙ୍କ ଭଳି ନାରୀ ନେତ୍ରୀଗଣ ତାଙ୍କ ପିତାଙ୍କୁ ପ୍ରବର୍ତ୍ତାଇ ଗୋଦାବରୀ ଦେବୀଙ୍କୁ ଘେନି ଆସିଥିଲେ ।

୧୯୩୪ ମସିହା ମେ ୯ ଜୁନ୍ ମାସରେ ମହାତ୍ମାଗାନ୍ଧୀ ଓଡ଼ିଶାରେ ହରିଜନ ପଦଯାତ୍ରା ଆରମ୍ଭ କରିଥିଲେ । ଗାନ୍ଧୀଜୀଙ୍କର ଏହି ଅଭିନବ ପଦଯାତ୍ରା ଥିଲା ଜାତିଧର୍ମ ନିର୍ବିଶେଷରେ ଭାରତୀୟମାନଙ୍କୁ ଏକତ୍ରିତ କରିବାର ପ୍ରସ୍ତୁତି ପର୍ବ । ଗାନ୍ଧିଜୀ ଉତ୍ତମ ରୂପେ ଉପଲବ୍ଧି କରିଥିଲେ ଭାରତୀୟମାନେ ଘୃଣ୍ୟ ଜାତିପ୍ରଥାରୁ ମୁକ୍ତ ହୋଇ ଐକ୍ୟବଦ୍ଧ ନ ହେଲେ ପରାକ୍ରମଶାଳୀ ବ୍ରିଟିଶ ଶକ୍ତି ବିରୁଦ୍ଧରେ ସଂଗ୍ରାମ କରିବା ସମ୍ଭବ ହେବ ନାହିଁ । ଶ୍ରୀ ଜଗନ୍ନାଥଙ୍କ ଏହି ବିଚିତ୍ର ଭୂମି ଓଡ଼ିଶାରେ ଗାନ୍ଧୀଜୀଙ୍କ ହରିଜନ ପଦଯାତ୍ରା ଏଥିପାଇଁ ତାତ୍ପର୍ଯ୍ୟ ପୂର୍ଣ୍ଣ ଥିଲା । ଏହି ସମୟରେ ଗୋଦାବରୀ ଦେବୀ ଗାନ୍ଧିଜୀଙ୍କ ସାନିଧ୍ୟ ଲାଭ କରି ତାଙ୍କ ସେବାରେ ନିଜକୁ ନିୟୋଜିତ କରି କୃତକୃତ୍ୟ ହୋଇଥିଲେ ।

ଗାନ୍ଧିଜୀ ସର୍ବଦା ଦୁଇଟି ଝିଅଙ୍କ କାନ୍ଧରେ ହାତ ଦେଇ ପଦଯାତ୍ରା କରୁଥିଲେ । ଗୋଦାବରୀ ଦେବୀ ମନେ ମନେ ଚିନ୍ତା କରୁଥିଲେ ଗାନ୍ଧିଜୀ ତାଙ୍କ କାନ୍ଧରେ ହାତ ଦେଇ ପଦଯାତ୍ରା କରନ୍ତେ କି ! ନିର୍ମଳ ବାସନାର କି ପ୍ରବଳ ଆସକ୍ତି । ସତକୁ ସତ ଦିନେ ତାଙ୍କର ସେପରି ସୁଯୋଗ ଆସିଥିଲା । ଗୋଦାବରୀ ଦେବୀ ନିଜ ଡାଏରୀରେ ଏହି ଅନୁଭୂତି ସମ୍ପର୍କରେ ଯେଉଁ ମର୍ମସ୍ପର୍ଶୀ ବର୍ଣ୍ଣନା କରିଛନ୍ତି ତାହା ଅତୀବ ରୋମାଞ୍ଚକର । ସେ ଲେଖିଛନ୍ତି, ''ଚାଲିବାକୁ ବାପୁଜୀ ଦୁଇଜଣ ଝିଅଙ୍କ କାନ୍ଧରେ ହାତ ରଖି ଚାଲନ୍ତି । ସେତେବେଳେ ସେମାନଙ୍କୁ ପରିଚୟ ଓ ବିବରଣୀ ପଚାରି ବୁଝନ୍ତି । ଆମ ଓଡ଼ିଆ ଝିଅଙ୍କୁ ସେ ସୁଯୋଗ ମିଳିଲା । ସମସ୍ତଙ୍କ ପାଳି ପଡ଼ିଲା । ମୋ ପାଳି ପଡ଼ି ନଥିଲା ବୋଲି ମନ ଖରାପ । ଆଜି ଉପର ବେଳା ଯାତ୍ରା ଆରମ୍ଭ ହୋଇ ବାପୁ ଆଗକୁ ପାଦ ବଢ଼ାଇଲା ବେଳକୁ କହିଲେ, 'କୋଇ ଓଡ଼ିଆ ଲଡ଼କୀ ହୈ ଆ ଯାଓ ।' ମୁଁ ଝଟକେରି ଗୋଟିଏ ପାଖରେ ଠିଆ ହୋଇଗଲି ଆର ପାଖରେ ସୁଶୀଳା ଦେବୀ । ପ୍ରଶ୍ନ ଆରମ୍ଭ ହେଲା । ନାମ ଓ ପରିଚୟ ବାପା କ'ଣ କରନ୍ତି ଇତ୍ୟାଦି । ମୁଁ ମୋ ବାପାଙ୍କ ସହ ସତ୍ୟାଗ୍ରହ କରି ମା' ରମାଦେବୀଙ୍କ ଆଶ୍ରମରେ କାମ କରୁଥିବା କଥା କହିଲି । ଆଉ ଘରକୁ ଫେରିବି ନାହିଁ । ବାପାଙ୍କ ପାଖକୁ । ବାପୁ କହିଲେ, 'ବାପା ନ ଡାକିଲେ ବି ତୁ ବାପାଙ୍କ ପାଖକୁ ଯାଇ ତାଙ୍କର ସେବା କରିବୁ । ଆଶ୍ରମରେ କ'ଣ ଖାଉଛୁ ? ଦୁଧ ଖାଉଛୁ ନା ?'

କେବଳ ସେତିକି ନୁହେଁ । ଗାନ୍ଧିଜୀଙ୍କର ପଦ ସେବା କରିବାର ସୁଯୋଗ ପାଇଥିଲେ ଗୋଦାବରୀ ଦେବୀ । ସବୁଠାରୁ କୌତୁହଳର ବିଷୟ ଯେ ଗାନ୍ଧିଜୀଙ୍କ ଅନୁରୋଧରେ ଗୋଦାବରୀ ଦେବୀ ତାଙ୍କୁ ଓଡ଼ିଆ ଭାଷା ଶିଖାଇଥିଲେ । ଦିନେ ଗାନ୍ଧିଜୀ କହିଲେ 'ବୁଲାଓ ଉସ୍ ଲଡ଼କୀ ଗୋଦାବରୀ କୋ ।' ଗୋଦାବରୀକୁ ଦେଖି ବାପୁ କହିଲେ 'ତୁମନେ ମୁଝେ ଓଡ଼ିଆ ଶିଖାନେ କହାଥା ନା, ଭୁଲଗଇ କ୍ୟା ? ଦେଖୋ ଜଲଦି ପଢ଼ାନା ସୁରୁ କରୋ ।' ଗୋଦାବରୀ ଦେବୀ ପୂର୍ବରୁ ରାଜକୃଷ୍ଣ ବୋଷଙ୍କୁ ଅନୁରୋଧ କରି ମଧୁରାଓଙ୍କ ବର୍ଣ୍ଣବୋଧ ସ୍ଲେଟ ଓ ଖଡ଼ି ଆଣି ପାଖରେ ରଖିଥାନ୍ତି । ବର୍ଣ୍ଣବୋଧର ୨ୟ ପୃଷ୍ଠାରେ ଥିବା 'ଭଜ'ର ଅର୍ଥ

ବାପୁଜୀ ପଚାରନ୍ତେ ଗୋଦାବରୀ ଦେବୀ ତାର ହିନ୍ଦୀ ପ୍ରତିଶବ୍ଦ କହି ନ ପାରିବାରୁ ଗୋପବନ୍ଧୁ ଚୌଧୁରୀ କହିଲେ 'ଇଂରାଜୀ ଲେଶ୍ ଶବ୍ଦର ଅର୍ଥ 'ଉନ' । ଗାନ୍ଧିଜୀ ଗୋଦାବରୀ ଦେବୀଙ୍କୁ 'ଗୁରୁଜୀ' ବୋଲି ଡାକନ୍ତି । ପଦଯାତ୍ରା ସମୟରେ ଗାନ୍ଧିଜୀଙ୍କ ସହିତ ସେ ନିୟମିତ ଭାବେ ହରିଜନ ବସ୍ତି ସଫେଇ, ସୂତାକଟା, ପ୍ରାର୍ଥନା ସଭାରେ ଯୋଗ ଦେଇଥିଲେ ।

୧୯୪୨ ମସିହାରେ ବ୍ରିଟିଶ ସରକାର ବରୀ ଆଶ୍ରମ ଜବତ କରିନେଲେ । ସେତିକିବେଳେ ସତ୍ୟାଗ୍ରହ କରିବାରୁ ଗୋଦାବରୀ ଦେବୀଙ୍କୁ ଗୋଟିଏ ବର୍ଷ ଜେଲଦଣ୍ଡ ଭୋଗିବାକୁ ପଡ଼ିଥିଲା । ଜେଲ କର୍ତ୍ତୃପକ୍ଷଙ୍କ ଅସଦାଚରଣ ବିରୁଦ୍ଧରେ ସେ, ରମାଦେବୀ, ମାଳତୀ ଦେବୀ ପ୍ରଭୃତି ଅନଶନ ଓ ସତ୍ୟାଗ୍ରହ କରିଥିଲେ । ଆଶ୍ରମରେ ଥିବାବେଳେ ସେ ନିୟମିତ ଭାବେ ଅନ୍ୟମାନଙ୍କ ସହିତ ନିକଟବର୍ତ୍ତୀ ହରିଜନ ବସ୍ତିରେ ସଫେଇ ପାଠପଢ଼ା, ସ୍ୱାସ୍ଥ୍ୟଶିକ୍ଷା, ସୂତାକଟା ଇତ୍ୟାଦି କାର୍ଯ୍ୟ କରିଥିଲେ ।

ଗୋଦାବରୀ ଦେବୀ ଗୋଟିଏ ରେଜେଷ୍ଟ୍ରୀଭୁକ୍ତ ଖଦୀ ଅନୁଷ୍ଠାନର ସଭାନେତ୍ରୀ ଥିଲେ । ଅନୁଷ୍ଠାନ ପାଇଁ ସରକାରୀ ଆର୍ଥିକ ସାହାଯ୍ୟର ସେ ପ୍ରତ୍ୟାଖ୍ୟାନ କରିଥିଲେ । ୧୯୪୬ ମସିହାରେ ବାଲେଶ୍ୱରରେ ସେ ପ୍ରଥମେ ମହିଳା ସମିତି ଗଠନ କରିଥିଲେ । ଏହାର ସଭାନେତ୍ରୀ ଥିଲେ ବିଭାସରକାର । ସେ ନିଜେ ସମ୍ପାଦିକା ଥିଲେ ଓ ଆଶା ବିଶ୍ୱାସ ପ୍ରଭୃତି ମହିଳାମାନେ ସଦସ୍ୟା ଥିଲେ । ନାରୀମାନଙ୍କ ମଧ୍ୟରେ ଜାଗରଣ ସୃଷ୍ଟି କରିବା, ନାରୀ ଶିକ୍ଷାକୁ ପ୍ରୋତ୍ସାହନ ଦେବା, ଆଲୋଚନା ସଭା ଆୟୋଜନ କରିବା ଏହି ସମିତିର ଥିଲା ପ୍ରଧାନ ଆଭିମୁଖ୍ୟ । ୧୯୫୨ ମସିହାରେ ସୀମା ଆନ୍ଦୋଳନର ପୃଷ୍ଠଭୂମିରେ ରହି ସେ ଛାତ୍ରଛାତ୍ରୀ ମାନଙ୍କୁ ପ୍ରେରଣା ଯୋଗାଇଥିଲେ ।

ତ୍ୟାଗ ହେଉଛି ସେବାର ଅନ୍ୟତମ ଧର୍ମ । ଏହି ମହାନ୍ ଆଦର୍ଶରେ ବଶବର୍ତ୍ତୀ ହୋଇ ଗୋଦାବରୀ ଦେବୀ ବହୁ ଅନୁଷ୍ଠାନକୁ ନିୟମିତ ଭାବେ ଆର୍ଥିକ ସାହାଯ୍ୟ ପ୍ରଦାନ କରୁଥିଲେ । ସ୍ୱାଧୀନତା ସଂଗ୍ରାମ ପେନ୍‌ସନ୍ ବାବଦ ସେ ପାଉଥିବା ସମସ୍ତ ଅର୍ଥ ସୋରର 'ପୁରୁବାଇ ଅନାଥାଶ୍ରମ', କଟକର 'ବସୁନ୍ଧରା' ଓ ତାଙ୍କ ନିଜ ଜନ୍ମଭୂମି କଲ୍ୟାଣପୁରର ଦୁଃସ୍ଥ ନାରୀମାନଙ୍କୁ ଦାନ କରୁଥିଲେ ।

ମଣି ସହିତ କାଞ୍ଚନର ସଂଯୋଗ ଘଟିଥାଏ । ଏହି ମହୀୟସୀ ମହିଳା ଯାହାଙ୍କର ପାଣିଗ୍ରହଣ କରିଥିଲେ ସେ ମଧ୍ୟ ଥିଲେ ଭାରତ-ସ୍ୱାଧୀନତା ଆନ୍ଦୋଳନର ଜଣେ ନିଷ୍ଠାପର ଗାନ୍ଧୀବାଦୀ କର୍ମୀ । ବ୍ରିଟିଶ ଶାସନାଧୀନ ବାଲେଶ୍ୱର କଲେକ୍ଟରିଏଟ୍‌ର ତତ୍କାଳୀନ ଅଫିସ ସୁପରିନ୍‌ଟେଣ୍ଡେଣ୍ଟ ତଥା ପୁରୀ ଶ୍ରୀ ଜଗନ୍ନାଥ ମନ୍ଦିରର ଏସିଷ୍ଟାଣ୍ଟ ମ୍ୟାନେଜର ଗୋପାଳ ଗାଁ ନିବାସୀ ଲକ୍ଷ୍ମୀନାରାୟଣ ଦାସଙ୍କ ଜଣେ ଯୋଗ୍ୟ ପୁତ୍ର ହିସାବରେ ରବୀନ୍ଦ୍ର ମୋହନ ଦାସ

ଇଚ୍ଛା କରିଥିଲେ ଗୋଟିଏ ସରକାରୀ ଉଚ୍ଚ ପଦବୀ ପାଇ ପାରିଥାନ୍ତେ । ମାତ୍ର ସେ ପଢ଼ା ତ୍ୟାଗକରି ଏହି ଆନ୍ଦୋଳନରେ ଝାସ ଦେଇଥିଲେ । ୧୯୩୪ ମସିହାରୁ ୧୯୪୦ ମସିହା ମଧ୍ୟରେ ସେ କଲିକତାରେ ଇଲେକ୍ଟ୍ରିକ୍ ସପ୍ଲାଇ ୱାର୍କରସ୍ ୟୁନିୟନର ସମ୍ପାଦକ ଥାଇ କଲିକତା, ଢାକା, ସିରାଜଗଞ୍ଜ, ଯଶୋର ଇତ୍ୟାଦି ଅଞ୍ଚଳରେ ବିଶିଷ୍ଟ ଶ୍ରମିକ ସଂଗଠନ ସୃଷ୍ଟି କରିଥିଲେ । ସେତେବେଳେ ସେ ଥିଲେ ବଙ୍ଗ ଦେଶର ଅପ୍ରତିଦ୍ୱନ୍ଦ୍ୱୀ ଶ୍ରମିକ ନେତା । ବଙ୍ଗଦେଶରୁ ବହିଷ୍କାର ଆଦେଶକୁ ବିରୋଧ କରିବାରୁ ତାଙ୍କୁ ଜେଲଦଣ୍ଡ ଭୋଗିବାକୁ ପଡ଼ିଥିଲା । ଆଜି ଅଶିତିପର ବର୍ଷ ବୟସରେ ମଧ୍ୟ ସେ କର୍ମଠ ରହି ବାଲେଶ୍ୱର ତଥା ଓଡ଼ିଶାର ବହୁ ସେବାନୁଷ୍ଠାନ, ଶିକ୍ଷାନୁଷ୍ଠାନ ଓ ସାଂସ୍କୃତିକ ସଂସ୍ଥା ସହିତ ସମ୍ପୃକ୍ତ ଅଛନ୍ତି । ବାଲେଶ୍ୱର ଏଡୁକେଶନ ଫାଉଣ୍ଡେସନ୍‌ର ସମ୍ପାଦକ ଓ ବ୍ୟାସବିହାରର ପ୍ରତିଷ୍ଠାତା ଭାବେ ତାଙ୍କ ଅବଦାନ ଅବିସ୍ମରଣୀୟ । ଗୋଟିଏ ବୃନ୍ତରେ ଦୁଇଟି ପୁଷ୍ପ ପରି ରବୀନ୍ଦ୍ର ମୋହନ ଦାସ ଓ ଗୋଦାବରୀ ଦେବୀ, ଦାମ୍ପତ୍ୟ ସୂତ୍ରରେ ଆବଦ୍ଧ ହୋଇ ଦେଶ ପାଇଁ ଯେଉଁ କାର୍ଯ୍ୟ କରିଛନ୍ତି ତାହା ଇତିହାସରେ ସ୍ୱର୍ଣ୍ଣାକ୍ଷରରେ ଲିପିବଦ୍ଧ ହୋଇ ରହିବ ।



*ଗୋପାଳ ଗାଁ , ବାଲେଶ୍ୱର*

# ସମସ୍ତଙ୍କର ଦେଈ- ଗୋଦାବରୀ ଦେଈ

**ଗଣେଶ ପ୍ରସାଦ ଦାସ**

ଗୋଦାବରୀ ଦେଈ ସମ୍ପର୍କରେ ମୋର ଭଉଣୀ । ବଡ଼ ଭଉଣୀକୁ ଆମ ଆଡ଼େ 'ଦେଈ' ସମ୍ବୋଧନ କରନ୍ତି । କିନ୍ତୁ ବିଚିତ୍ର କଥା, ଗୋଦାବରୀ ଦେଈ ଥିଲେ ଜଣେ ସାର୍ବଜନୀନ 'ଦେଈ' । ଅନ୍ୟ ପରିଚିତ ଅପରିଚିତ ଲୋକଙ୍କ କଥା କ'ଣ କହିବା, ତାଙ୍କ ଝିଅ ଜ୍ୱାଇଁମାନେ ମଧ ତାଙ୍କୁ 'ଦେଈ' ସମ୍ବୋଧନ କରନ୍ତି । ମୋର ଜ୍ଞାନ ହେଲାଠାରୁ ମୁଁ ତାଙ୍କ ବିଷୟରେ ଜାଣିଥିଲି, ମାତ୍ର ତାଙ୍କୁ ମୁଁ ବେଶିଥର ଦେଖି ନଥିଲି କି ତାଙ୍କ ସହିତ ବିଶେଷ କଥାବାର୍ତ୍ତା ହୋଇ ନଥିଲି । ତାଙ୍କ ସ୍ୱାମୀ ରବୀନ୍ଦ୍ର ମୋହନ ଦାସଙ୍କ ସହିତ ସେ ବାଲେଶ୍ୱରରେ ରହୁଥିଲେ । କଲ୍ୟାଣପୁର ଗାଁକୁ ଆସିଲେ ବାପା ମତେ ନେଇ ତାଙ୍କ ସହିତ ସାକ୍ଷାତ କରାଇ ଦିଅନ୍ତି । ୧୯୭୧ ଅକ୍ଟୋବର ମାସରେ ମୋତେ ଫକୀର ମୋହନ ମହାବିଦ୍ୟାଳୟରେ ଯୋଗ ଦେବାପାଇଁ ନିଯୁକ୍ତିପତ୍ର ମିଳିଲା । ବାପା ଗୋଦାବରୀ ଦେଈଙ୍କ ପାଖକୁ ଖଣ୍ଡିଏ ଚିଠି ଲେଖିଦେଲେ ବାଲେଶ୍ୱରରେ ମୋର ରହିବାର ବନ୍ଦୋବସ୍ତ କରିଦେବାପାଇଁ । ମୁଁ କାର୍ଯ୍ୟରେ ଯୋଗଦେବା ବେଳକୁ ପୂଜାଛୁଟି ଚାଲିଥିଲା । ଦେଈଙ୍କୁ ଦେଖା କରି ଛୁଟିପରେ ଆସିବି ବୋଲି କହି ଭୁବନେଶ୍ୱର ଫେରିଲି । ଛୁଟି ପରେ ତାଙ୍କ ଘରେ ପହଞ୍ଚିଲି । ସେ ତାଙ୍କରି ଘରେ ହିଁ ରହିବାର ବ୍ୟବସ୍ଥା କରିଦେଲେ ଏବଂ ସେଇଠି ମୁଁ ୧୯୭୬ ଜାନୁଆରୀରେ ବାଲେଶ୍ୱର ଛାଡ଼ିବା ପର୍ଯ୍ୟନ୍ତ ରହିଗଲି ।

ବାଲେଶ୍ୱର ରହଣି ଆରମ୍ଭରୁ ଶେଷପର୍ଯ୍ୟନ୍ତ ମୁଁ ଦେଈଙ୍କର ଆତ୍ମୀୟତା ଲାଭ କଲି । ବଡ଼ଭଉଣୀ ମା' ସମାନ ବୋଲି ମାନ୍ୟତା ଦିଆଯାଏ । ଚାରିବର୍ଷ ଚାରିମାସ ତାଙ୍କ ଘରେ ତାଙ୍କର ଆପଣାର ସାନଭାଇ ପରି ଚଳିଲି । ତାଙ୍କର ଖଞ୍ଜାଏ ଘର ହେଲେ ବି ଚଳିବା ପାଇଁ ବିଶେଷ ଘର ନଥାଏ । ତଥାପି ସେ ମତେ ଗୋଟିଏ ବଖରା ଛାଡ଼ି ଦେଇଥିଲେ ଚେୟାର, ଟେବୁଲ, ଖଟ ସହିତ । ମୋର ଖିଆପିଆ, ଭଲମନ୍ଦ ବୁଝିବାରେ ସେ କେବେ ହେଳା କରିନାହାନ୍ତି । ସେ କେବେ ବାହାରକୁ ଗଲେ ବା ତାଙ୍କ ଦେହ ଅସୁସ୍ଥଥିଲେ, ମୋ ଖିଆପିଆର ବିକଳ୍ପ ବନ୍ଦୋବସ୍ତ କରିଦିଅନ୍ତି । ଆପଣାଭାବ ଯେପରି କ୍ଷୁଣ୍ଣ ନହୁଏ, ସେ ପ୍ରତି ସେ ସଜାଗ ଥାଆନ୍ତି ।

ଦେଈ ଆମର ସରଳ ଓ କୋମଳ, ପୁଣି କଠିନ ଓ ଦୃଢ଼ ମନୋଭାବର ମଣିଷ । ବିରୋଧାଭାସର ମଣିଷ ପରି ଜଣାଯା'ନ୍ତି । ପାଖରୁ ନଦେଖିଲେ, ଆତ୍ମୀୟତାର ସହିତ ବିଚାର ନକଲେ, ତାଙ୍କୁ ଭୁଲ ବୁଝିବାର ସମ୍ଭାବନା ଅଛି । ତାଙ୍କ ସହିତ ଏକଦା ତାଙ୍କ ବଡ଼ସମଦୁଣୀଙ୍କ ବୁଝାମଣା ସୁସ୍ଥ ନଥିବାର କାରଣ ଏହା ହୋଇପାରିଥାଏ । ମନର ଦୁଇଟି ପ୍ରଧାନ ସ୍ତର ଅଛି : ସ୍ନେହ-ଶ୍ରଦ୍ଧା, ଆବେଗ-ଉଦ୍‌ବେଗ ସମ୍ୱଳିତ ହୃଦୟ ଓ ଶୁଭ-ଅଶୁଭ, ସୁନ୍ଦର-ଅସୁନ୍ଦର, ଭଲ-ମନ୍ଦ, ନୀତି-ଅନୀତି ସମ୍ୱଳିତ ବୁଦ୍ଧି । ବିଚାରବୁଦ୍ଧି ସ୍ତରରେ ଦେଈ ଦୃଢ଼ ଓ କଠିନ, କିନ୍ତୁ ହୃଦୟ ସ୍ତରରେ ସେ ସ୍ନିଗ୍ଧ ଓ କୋମଳ । ରବିଭାଇ କହନ୍ତି, ''ତମ ଦେଈଙ୍କ ମନ ନଡ଼ିଆ ପରି । ବାହାର ଟାଣ, ଭିତର ନରମ ।'' ସେ ନିଜେ ବେଳେବେଳେ ଦେଈଙ୍କ ଖର କଥାର ଶିକାର ହୁଅନ୍ତି ।

ଦିନେ ସନ୍ଧ୍ୟାରେ ରବିଭାଇ ମୋତିଗଞ୍ଜ ବଜାର ଗଲେ ସଉଦା ଆଣିବାକୁ । ପରିବା ଆଣିଲେ ରୋଷେଇ ହେବ ବୋଲି ଦେଈ ଅପେକ୍ଷା କରିଛନ୍ତି । ରାତି ଏଗାରରେ ଫେରିଲେ । ସେତେବେଳେ ପର୍ଯ୍ୟନ୍ତ କିଏ ଅରନ୍ଧା ବସି ରହନ୍ତା କି ? କେମିତି ହେଲେ ଆୟୋଜନ କରନ୍ତା । ଦେଈ ସେଇଆ କଲେ । ଏ ଅବସ୍ଥାରେ ଯେ କୌଣସି ସ୍ତ୍ରୀ ତା ସ୍ୱାମୀଙ୍କୁ ନିଶ୍ଚୟ ତିରସ୍କାର କରନ୍ତା, ଦେଈ ଯେ ତାହା କଲେ ସେଥିରେ ନୂତନତା ନାହିଁ । କିନ୍ତୁ ଯେଉଁ ଭାଷାରେ ଦେଈ ଆମର ଭାଇଙ୍କୁ ତିଆରିଲେ, ତାହା ଲକ୍ଷ୍ୟ କରିବାର କଥା । ବଜାର ଉପରେ ରବିଭାଇ ତାଙ୍କର ସତୀର୍ଥମାନଙ୍କ ସହିତ ରାଜନୀତି ଆଲୋଚନା କରୁକରୁ ସନ୍ଧ୍ୟା ଗଡ଼ି ଅଲକ୍ଷ୍ୟରେ ରାତି ହେଇଗଲା । ଦେଈ କହିଲେ, ''କି ରାଜନୀତି କରୁଛ ? ଘରକଥା ବୁଝିସାରିଲେ ସିନା ଦାଣ୍ଡ କଥା ବୁଝିବ ? ଘରେ ହାଣ୍ଡି ଗଡ଼େଇ ଦେଇ, ଦାଣ୍ଡରେ ଯାଇ ବଡ଼େଇ କରିବ ?''

ଏଥିରୁ ବୁଝିବାକୁ ହେବ ଯେ ଦେଈଙ୍କ ମତରେ ଯିଏ ନିଜ ଘରର ପରିଚାଳନା ସୁଚାରୁରୂପେ କରି ପାରିନାହିଁ, ସେ ଦେଶଦଶର ସୁପରିଚାଳନା କରିପାରିବ ନାହିଁ । ଦେଶର ଗୋଟିଏ ଅଂଶ ତ ଚାରିକାନ୍ଥ ଭିତରେ ପରିବାର ନାମରୂପରେ ଆବଦ୍ଧ । ଅଂଶବିଶେଷର ପରିଚାଳନା ସମଗ୍ରର ପରିଚାଳନାର ପ୍ରତିମାନ । ଗୃହର ରକ୍ଷଣାବେକ୍ଷଣ, ବିତ୍ତ ଓ ସାମଗ୍ରୀ ଯୋଗାଣ, ସୁରକ୍ଷା ପ୍ରଦାନ, ଜନ ସଂପର୍କ ରକ୍ଷା, ଅତିଥିଚର୍ଚ୍ଚା, ଶିକ୍ଷା, ସ୍ୱାସ୍ଥ୍ୟ ଆଦି ଆଦିର ପରିଚାଳନା ଓ ଦେଶର ଉକ୍ତ ବିଷୟାଦିର ପରିଚାଳନା ଉଣା ଅଧିକେ ସମାନ ।

ଦେଈ ଏହି ତତ୍ତ୍ୱଟିକୁ ଠିକଭାବେ ବୁଝିଥିଲେ ବୋଲି ନିଜେ ଜଣେ ସୁନିପୁଣା ଗୃହିଣୀ ହୋଇ ପାରିଥିଲେ । ହେଲେ ତାଙ୍କର କର୍ତ୍ତବ୍ୟକର୍ମ ଗୃହାଙ୍ଗନରେ ସୀମିତ ନଥିଲା । ମୋର ମନେହୁଏ ଯେ ସେ କାମ, ଅର୍ଥ, ଧର୍ମ ଓ ମୋକ୍ଷ ରୂପକ ଚଉବର୍ଗ ସାଧନରେ ବ୍ରତୀଥିଲେ । ମାନବ ଜୀବନର ଚଉବର୍ଗ ଲକ୍ଷ୍ୟ ବିଷୟରେ ସମସ୍ତେ ସଚେତନ ନଥାନ୍ତି । ପୁଣି ଯେଉଁମାନେ ଏ ବିଷୟରେ ସଚେତନ ଥାନ୍ତି, ସେ ସମସ୍ତେ ଏଥିରେ ସଫଳକାମ ହୋଇପାରନ୍ତି ନାହିଁ ।

ଚଉବର୍ଗ ସାଧନ ହେଲା ଆମ ସଂସ୍କୃତିର ମହାନ ଆଦର୍ଶ । ଗଛଟିଏ ପରି ବଢ଼ି, ଅବଶେଷରେ ଛିଡ଼ିଯିବା ପାଇଁ ମଣିଷ ଜନ୍ମ ହୋଇନାହିଁ । ସେ ଦମ (ନିୟନ୍ତ୍ରିତ ପ୍ରତିକ୍ରିୟା), ଦାନ (ସମ୍ପଦର ସମର୍ପଣ), ଦୟା (ଅନୁଗ୍ରହ ପ୍ରଦର୍ଶନ) ଏହି ଦୈବୀଭାବମାନଙ୍କର ଆଚରଣ ପାଇଁ ଜନ୍ମ ନେଇଛି । ଏକଥା ହୃଦୟଙ୍ଗମ କରିଥିଲେ ଏ ଯୁଗର ଶ୍ରେଷ୍ଠମାନବ ମହାତ୍ମାଗାନ୍ଧୀ । ପିଲାବେଳରୁ ଦେଈ ମହାତ୍ମାଗାନ୍ଧୀଙ୍କ ଆଦର୍ଶର ଅନୁଗାମୀ । ବରି ଆଶ୍ରମ ତାଙ୍କର ଜୀବନ ବିଦ୍ୟାଳୟ ଓ ସ୍ୱାଧୀନତା ସଂଗ୍ରାମର ତାଲିମ କେନ୍ଦ୍ର । ଗାନ୍ଧୀଙ୍କର ଶିଷ୍ୟ କେବଳ ଖାଇ-ଶୋଇ ସମୟ ବିତାଇ ପାରିବ ନାହିଁ । ଦିନେ ମାଳତୀ ଦେବୀ ଦେଈଙ୍କ ଘରକୁ ଆସିଥିଲେ । ଆସୁ ଆସୁ ରବି ଭାଇଙ୍କୁ ପଚାରିଲେ, ''କ'ଣ ରବି, ଖାଲି ଖାଇପିଇ ଶୋଉଛ, ନା ଆଉ କିଛି କରୁଛ ?''

ଦେଈ ଅନେକ ସଂଗଠନ ସହିତ ସଂପୃକ୍ତ ଥିଲେ, ଅର୍ଥନୈତିକ ଦୁର୍ବଳ ଶ୍ରେଣୀ ଲୋକଙ୍କର, ବିଶେଷକରି ଅସହାୟ ସ୍ତ୍ରୀ ଲୋକମାନଙ୍କର ଗ୍ରାସାଚ୍ଛାଦନ କିପରି କରାଯାଇ ପାରିବ ଓ ଏଦିଗରେ ସ୍ୱଚ୍ଛଳ ବର୍ଗର ଲୋକମାନେ କିପରି କାର୍ଯ୍ୟ କରିପାରିବେ ଏଥିପାଇଁ ଦେଈଙ୍କର ଚିନ୍ତା ଓ ଚେଷ୍ଟା କେନ୍ଦ୍ରିତ ଥିଲା । ଏହି ଲକ୍ଷ୍ୟ ସାଧନ ପାଇଁ ଦୁଇ ପ୍ରକାରର ସଂଗଠନ ଆବଶ୍ୟକ : ସ୍ୱଚ୍ଛଳ ବର୍ଗର ସଂଗଠନ କରି ତାଙ୍କଠାରୁ ସମ୍ବଳ ଓ ସହଯୋଗ ଯୋଗାଡ଼ କରିବା, ପୁଣି ଦୁର୍ବଳ ବର୍ଗର ସଂଗଠନ କରି ତାଙ୍କଦ୍ୱାରା ଯେଉଁ ଯେଉଁ କାର୍ଯ୍ୟ ହେବା ସମ୍ଭବ, ତାହା କରାଇବା ଓ ଶ୍ରମ ବଦଳରେ ତାଙ୍କର ମୌଳିକ ଆବଶ୍ୟକତା ପୂରଣ କରିବା । ଦେଈ ଏଥିପାଇଁ ଅନେକ ସମୟରେ କଟକ, ଭୁବନେଶ୍ୱର ତଥା ବାଲେଶ୍ୱରର ଗାଁଗଣ୍ଡା ଗସ୍ତରେ ଯାଉଥିଲେ । ଗୋପାଳ ଗାଁରେ 'ସାବିତ୍ରୀ ବିଦ୍ୟାପୀଠ'ର ପ୍ରତିଷ୍ଠା ଓ ବିକାଶ, ବାଲେଶ୍ୱରରେ ବ୍ୟାସବିହାର ସ୍ନାତକୋତ୍ତର ଶିକ୍ଷା ପ୍ରତିଷ୍ଠାନର ସଂସ୍ଥାପନ ପାଇଁ ତାଙ୍କର ଓ ରବିଭାଇଙ୍କର ପ୍ରଗାଢ଼ ଉଦ୍ୟମ ଓ ଅନ୍ତହୀନ ପ୍ରେରଣା ବାଲେଶ୍ୱର ତଥା ଓଡ଼ିଶାବାସୀଙ୍କ ପାଇଁ ଚିରସ୍ମରଣୀୟ ।

ଘରର ରୋଷେଇବାସ କାର୍ଯ୍ୟ ଦେଈ ନିଜେ କରନ୍ତି ଓ ତାଙ୍କ ରାନ୍ଧଣା ରୁଚିପୂର୍ଣ୍ଣ । ଘର ସଫାକରିବା, ଗାଈଗୋରୁ କାମ କରିବା ଓ ତାଙ୍କ ଅନୁପସ୍ଥିତିରେ ରୋଷେଇ କରିବା ପାଇଁ ସେ ଏକାଧିକ ଲୋକ ରଖିଥାଆନ୍ତି । କିନ୍ତୁ ସେମାନଙ୍କୁ ସେ ଚାକର-ପୂଝାରୀଭାବେ ରଖି ନଥାନ୍ତି । ଅସହାୟ ପିଲା ବା ସ୍ତ୍ରୀ ଲୋକଙ୍କୁ ସେ ଆଶ୍ରୟ ଦେଇଥାନ୍ତି । କିଛି କାମ କରିବେ, ଖାଇପିଇ ଘରଲୋକ ପରି ରହିବେ । ସେମାନଙ୍କର ବିକଳ୍ପ ସୁବିଧା ହେଲେ ସେମାନେ ଚାଲିଯାଆନ୍ତି । ପୁଣି ନୂଆ ଲୋକ ଆସନ୍ତି । ମୁଁ ଏହିପରି କୋଡ଼ିଏ ଲୋକଙ୍କୁ ଆସିବା ଯିବାର ଦେଖିଥିବି । ସେମାନଙ୍କ ବ୍ୟତୀତ ପ୍ରତିଦିନ ଦୁଇତିନିଜଣ ଅଭ୍ୟାଗତଙ୍କୁ ସେ ଘର ରୋଷେଇରୁ ଭୋଜନ କରାନ୍ତି ।

ଧର୍ମର ପରିଧି ମଧ୍ୟରେ ଦେଶ ଆବଶ୍ୟକତା ଓ ତତ୍‌ନିମିତ୍ତ ଲବ୍ଧ ସମ୍ବଳର ସୁପରିଚାଳନା କରୁଥିଲେ । ରବିଭାଇ ସେତେବେଳେ ଗୋଟିଏ ପ୍ରତିଷ୍ଠିତ ରାଜନୈତିକ ଦଳ (ପ୍ରଜା ସମାଜବାଦୀ ଦଳ)ର ଅନ୍ୟତମ ମୁଖ୍ୟକର୍ତ୍ତା ଓ ପୁଣି କିଛି କାଳ ପାଇଁ ଓଡ଼ିଶା ବିଧାନସଭାର ସଦସ୍ୟଥିଲେ ମଧ୍ୟ ସେହି ମାଧ୍ୟମରେ ସେ ଦେଶଙ୍କ ଦ୍ୱାରା ପ୍ରଚୋଦିତ ହୋଇ- ଯାହା ସାଧାରଣତଃ ହୋଇଥାଏ- ଅଧର୍ମ ବିତ୍ତ ଉପାର୍ଜନ କରିବାକୁ ମନ ବଳାଇ ନାହାନ୍ତି ବୋଲି ମୋର ହୃଦବୋଧ ହୋଇଛି । ସିଡ଼ିଘର ଛାତ ପଡ଼ିନଥିବାରୁ ବର୍ଷାପାଣି ଗଳୁଥିବା ଏକ ମହଲା ପକ୍କା ଘରଟିଏ କୌଣସିମତେ ମିସ୍ତ୍ରୀର ନିଜସ୍ୱ ନଜରରେ ତିଆରି ହୋଇଥିଲା । ଖଞ୍ଜାର ବାକି ଅଂଶ ନଡ଼ାଛପର । ଘରେ ଆଡ଼ମ୍ବରପୂର୍ଣ୍ଣ ଜିନିଷ କିଛି ନଥିଲା । ଖଣ୍ଡେ ପୁରୁଣା ଜିପ୍‌ଗାଡ଼ିଥିଲା । ମୋ ଦେଖିବାରେ ତାହା କେବେ ବ୍ୟବହାର ନ ହୋଇ ଘୋଡ଼ା ହୋଇ ପଡ଼ିଥିଲା । ଦିନେ ନିର୍ବାଚନ ଖର୍ଚ୍ଚ ତୁଲାଇବା ପାଇଁ ଅଳ୍ପ କେତେ ହଜାର ଟଙ୍କାରେ, ପ୍ରାୟ ଲୁହା ଦରରେ, ଭାଇ ତାକୁ ବିକ୍ରୀ କରିଦେଲେ । ଇଂଲିଶ ଫ୍ରେମର ଖଣ୍ଡେ ଖଣ୍ଡିଆ ସାଇକେଲ ଧରି ସେ ବୁଲନ୍ତି । ବଜାର, ରାଜନୀତି, ସମାଜସେବା ସେଇଥିରେ କରନ୍ତି । ଜନସଂପର୍କ ପାଇଁ ଟେଲିଫୋନଟିଏ ରଖିଥାଆନ୍ତି । ତା'ର ପଇସା କଷ୍ଟରେ ପଇଠ କରନ୍ତି । ଦୁର୍ବଳ ଆର୍ଥିକ ସ୍ଥିତି ସତ୍ତ୍ୱେ ବଡ଼ କୁଣ୍ଠିତରେ, ବହୁ ବନ୍ଧୁ ଓ ଶୁଭେଚ୍ଛୁଙ୍କ ଅନୁରୋଧରେ ଦେଶ ଓ ଭାଇ କେନ୍ଦ୍ର ସରକାରଙ୍କ ସ୍ୱାଧୀନତା ସଂଗ୍ରାମୀଭତ୍ତା ମାସକୁ ଦୁଇଶହ ଟଙ୍କା ଲେଖାଏଁ (ପରେ ତା'ର ପରିମାଣ କିଛି ବର୍ଦ୍ଧିତ ହୋଇଛି ) ଗ୍ରହଣ କଲେ । ଅଥଚ ଖଳ ଲୋକମାନେ ପ୍ରଚାର କଲେ ଯେ ଭୁବନେଶ୍ୱରର ରବୀନ୍ଦ୍ର ମଣ୍ଡପ ହେଉଛି କଳା ଟଙ୍କାରେ ନିର୍ମିତ ରବୀନ୍ଦ୍ର ମୋହନ ଦାସଙ୍କର ବାସଭବନ !

ଦେଶଙ୍କର ଦୁଇଝିଅ । ମୁଁ ବାଲେଶ୍ୱର ଗଲାବେଳକୁ ବଡ଼ଝିଅ (ଯଶୋଧାରା ଓରଫ୍ ଟୁଣ୍ଡୁ) ବାହା ହୋଇ ସାରିଥିଲା ଭୁବନେଶ୍ୱରସ୍ଥ କେନ୍ଦ୍ରୀୟ ଗବେଷଣା ପ୍ରତିଷ୍ଠାନର ଜଣେ ଯନ୍ତ୍ରୀ ବିଭୂ ମହାନ୍ତିଙ୍କୁ ଓ ସେଠାରେ ଥିବା ଭିତରେ ସାନଝିଅ (କୀର୍ତ୍ତିଧାରା ଓରଫ୍ ଫୁଲ୍ଲୁ) ବାହାହେଲା ଗୁଜରାଟ ପାହିଆ ଜଣେ (ଓଡ଼ିଆ) ଆଇ.ଏ.ଏସ୍. ଅଫିସର ରବି ଦାସଙ୍କୁ । ଦାରୁଣ ଦୁଃଖର କଥା ଅସମୟରେ ସାନଝିଅଟି ଚାଲିଗଲା । ଦେଶ ସେତେବେଳକୁ ଅସୁସ୍ଥ । ନିଜର ଯେଉଁ ପ୍ରକାର ଅସୁସ୍ଥତା, ତା ଅପେକ୍ଷା ଝିଅର ବିୟୋଗ ତାଙ୍କୁ ଦାରୁଣ ଆଘାତ ଦେଲା । ସେ ଝିଅ ଜ୍ୱାଇଁମାନଙ୍କୁ ପ୍ରାଣଠାରୁ ବଳି ଭଲ ପାଉଥିଲେ । ସେମାନେ ତାଙ୍କ ପାଖରେ ଯେତେ ଅଧିକ ସମୟ ରହିପାରିବେ ରହନ୍ତୁ ବୋଲି ସେ ସବୁବେଳେ ଚାହୁଁଥିଲେ । ବାଡ଼ିରେ ଆମ୍ବ, କଦଳୀ ପାଚିଛି, ଝିଅଜ୍ୱାଇଁ ଆସି ରହନ୍ତେ କି, ଖାଆନ୍ତେ ! ଗାଈ ଜନ୍ମ କରିଛି, ଝିଅ ଓ ତା ପିଲାମାନେ ଆସି ରହନ୍ତେ କି ନିରୁତା କ୍ଷୀର ଖାଆନ୍ତେ ! ଅପତ୍ୟ ସ୍ନେହ ତାଙ୍କର ଅତ୍ୟଧିକ, ଅତ୍ୟନ୍ତ ମାତୃ ପରାୟଣ । ମୋ ସ୍ତ୍ରୀକୁ ବାଲେଶ୍ୱର ବୁଲାଇ ନେବାପାଇଁ ମତେ ସବୁବେଳେ

କହନ୍ତି । ସେ ତ ସହଜେ ଭୁବନେଶ୍ୱରରେ ସରକାରୀ ଚାକିରିଆ, ତା'ପରେ ଦେଈଙ୍କ ଉପରେ ବୋଝ ବଢ଼ିଯିବ ବୋଲି ମୋର ସଂକୋଚ । ତଥାପି ଥରେ ତାଙ୍କୁ ବାଲେଶ୍ୱର ଡକାଇ ନେଇଥିଲି । ଭାରି ଖୁସି ହେଲେ ଓ ତାଙ୍କର ଖୁବ୍ ଆଦର ଯତ୍ନ କଲେ ।

ଘର ବାହାରର ଏତେ କାମ ସତ୍ତ୍ୱେ ସେ କିଛି କିଛି ପଢ଼ନ୍ତି ଓ ଲେଖନ୍ତି, ଛୋଟ ଗପ, କବିତା, ଅନୁଚିନ୍ତା, ଆତ୍ମକଥା, ସାମାଜିକ ସମସ୍ୟା ସମନ୍ୱିତ ଆଲୋଚନା । ତାଙ୍କର ଅକ୍ଷରଗୁଡ଼ିକ ସୁଗୋଲ ଓ ସୁନ୍ଦର । ମହାତ୍ମାଗାନ୍ଧୀଙ୍କ ଓଡ଼ିଶା ଆଗମନ ଅବସରରେ ସେ ତାଙ୍କୁ ଓଡ଼ିଆ ଅକ୍ଷର ଶିଖେଇଥିଲେ ବୋଲି ମନେପକାଇ ଉଲ୍ଲସିତ ହୁଅନ୍ତି । ତାଙ୍କର ପ୍ରକାଶିତ ଓ ଅପ୍ରକାଶିତ ଅନେକ ଲେଖା ଅଛି । ବାବୁ ବିରାଜ ମୋହନ ସେଗୁଡ଼ିକ ସଂକଳନ କରି ପ୍ରକାଶିତ କରୁଥିବାରୁ ଧନ୍ୟବାଦାର୍ହ । କୌଣସି କଥାକୁ ସଜାଡ଼ି, ସଜେଇ ସରଳ ଭାଷାରେ କହି ଦେବାର ସାମର୍ଥ୍ୟ ଦେଈଙ୍କର ଥିଲା । ଏପରି ସାମର୍ଥ୍ୟ ଥିଲେ ଜଣେ ଭଲ ଲେଖିପାରିବା କଥା । ଲୋଡ଼ା ଖାଲି ସମୟ ଓ ସାହସ । ଜୀବନର ନାନା ବ୍ୟସ୍ତତା ମଧ୍ୟରୁ ସେ ସମୟ ସଞ୍ଚୟ କରୁଥିଲେ ପଢ଼ା ଲେଖା ପାଇଁ । ମୋ ଦ୍ୱାରା ସେ ମହାବିଦ୍ୟାଳୟ ଗ୍ରନ୍ଥାଗାରରୁ ଅନେକ ବହି ଆଣି ପଢ଼ିଛନ୍ତି ।

ଦିନେ ଦେଈ ଗୋଟିଏ ଘଟଣା ଯେପରି କହିଲେ ତାହା କାଳ୍ପନିକ ଗପଠାରୁ ବଳି ଅଦ୍ଭୁତ ସତ୍ୟ ଘଟଣା ପରି ମନେହେଲା । ''ଏକ ସଦ୍ୟଜାତ ଶିଶୁକୁ କିଏ ବଳଙ୍ଗ ନଦୀକୂଳରେ କିଆବୁଦା ମୂଳରେ ଫୋପାଡ଼ି ଦେଇ ଯାଇଛି । ତାକୁ ବିଲୁଆ, ଶାଗୁଣା ଖାଉ ନାହାନ୍ତି କି ଶବ ପଚିସଢ଼ି ଯାଉନାହିଁ । ତିନି ଦିନ ହେଲାଣି, ସେ ଛୁଆ ସେମିତି ରହିଛି, ସଜଫୁଟା ଫୁଲ ପରି ।'' ଏହା ଶୁଣି ଆବିଷ୍କାରକର ମନନେଇ ମୁଁ ଓ ହିନ୍ଦୀ ଅଧ୍ୟାପକ ବନମାଳୀ ଦାସ ଧାଇଁଲୁ ବଳଙ୍ଗ ନଦୀ ଅତଡ଼ା ତଳେ ତଳେ ମଶାଣୀ ପଦାକୁ । ବର୍ଣ୍ଣିତ ଜାଗାରେ ଯାଇ ପହଞ୍ଚଲା ବେଳକୁ ମଣିଷ ହାଡ଼, ଖପୁରୀ, ପୋଡ଼ାକାଠ ସବୁ ଏଣେତେଣେ ପଡ଼ିଥିବାର ଦେଖିଲୁ ସିନା, ଛୁଆକୁ ଦେଖିଲୁ ନାହିଁ । କଥାରେ ଅଛି, 'କୁଆଟାଏ ଉଡ଼ିଯାଉଥିଲେ ଛୁଆଟାଏ ଉଡ଼ି ଯାଉଛି ବୋଲି ଲୋକେ ଉଆକା କରି ଦିଅନ୍ତି ।' ସେମିତି କିଏ କ'ଣ କରିଥିବ । ଦେଈ ତାକୁ ଶୁଣି ଗପ କହିଲା ଢଙ୍ଗରେ ଏତେ ନିଖୁଣ ଭାବରେ କହିଦେଲେ ଯେ ତାହା ଅବିକଳ ସତପରି ମନେ ହେଲା । ଏହା ଦେଈଙ୍କର ସରଳ, ନିଷ୍କପଟ ବିଶ୍ୱାସର ମଧ୍ୟ ପରିଚୟ ଦିଏ ।

ସାଧାରଣ ମଣିଷକୁ ସେ ସରଳ ଓ ନିଷ୍କପଟ ବୋଲି ବିଶ୍ୱାସ କରୁଥିଲେ ମଧ୍ୟ ପାଠ ପଢୁଆ ମଣିଷ ସମସ୍ତେ ସେପରି ନୁହଁନ୍ତି ବୋଲି ତାଙ୍କର ବିଶ୍ୱାସ ଥିଲା । ସମସ୍ତଙ୍କ ପ୍ରତି ସମଚିତ୍ତ ଓ ସମଦୃଷ୍ଟି ହେବା ଅର୍ଥ ସମସ୍ତେ ଏକା ଜାତର ଓ ଏକାବାଟର ମଣିଷ ବୋଲି ବୁଝିବା ନୁହେଁ; ବରଂ ଯିଏ ଯେପରି, ତା' ପ୍ରତି ସେପରି ମନୋଭାବ ପୋଷଣ କରିବା

ଉଚିତ୍ ବୋଲି ଦେଈ ଭାବୁଥିଲେ । ଏ ଭାବନା ମଧ୍ୟରେ ତାଙ୍କର ଟିକେ ଅହଂଭାବ ଥିଲା ବୋଲି କେତେକ ମନେ କରନ୍ତି । ମୁଁ ସେପରି ଅନୁଭବ କରିନାହିଁ । କାରଣ ସେ ଭଦ୍ର, ଉଦାର ଓ ବିନୀତ । ସେ ଦୃଢ଼ ଓ ସାହସୀ ବୋଲି ମୁଁ ଆଗରୁ କହିଛି । ଯେଉଁମାନେ ସାହସୀ ତାଙ୍କର ବିନୟ ବିଜଡ଼ିତ କର୍ତ୍ତୃତ୍ୱଭାବ ଅବଶ୍ୟ ରହିବ । ଏହା କର୍ମପ୍ରବଣତା ବିନା ସମ୍ଭବ ହେବ ନାହିଁ । ଏହି କର୍ତ୍ତୃତ୍ୱ ଭାବକୁ ଅହଂଭାବ ବୋଲି ଭ୍ରମ କରିବା ଅନୁଚିତ । ଦେଈଥିଲେ ଗଭୀର ଭାବରେ ଈଶ୍ୱର ବିଶ୍ୱାସୀ, ଯେଉଁ ଈଶ୍ୱର ଜନଗଣ, କାଷ୍ଠ, ପାଷାଣ, ତରୁ, ତୃଣର ସତ୍ତାରେ ପ୍ରକାଶିତ । କିନ୍ତୁ ସେ ଭାଗ୍ୟବାଦୀ ନଥିଲେ, ପ୍ରଖର କର୍ମବାଦୀ ଥିଲେ ।

ଦେଈ ଯେ ଜଣେ ସାହସୀ ମହିଳା ଥିଲେ, ଏଥିରେ ସନ୍ଦେହ ନାହିଁ । ତା ନ ହୋଇଥିଲେ ପଲ୍ଲୀର ଏକ ରକ୍ଷଣଶୀଳ ସମ୍ଭ୍ରାନ୍ତ ପରିବାରରୁ ଜ୍ଞାତି କୁଟୁମ୍ବ ତଥା ସମାଜର କଟାକ୍ଷ, କଟୂକ୍ତିକୁ ଭ୍ରୂକ୍ଷେପ ନକରି ଏରୁଣ୍ଡି ଡେଇଁ ଆଶ୍ରମରେ ବାସ କରିବା ଓ ସଂଗ୍ରାମରେ ଝାସ ଦେଇ କାରାବାସ କରିବା କ'ଣ ସମ୍ଭବ ହୋଇଥାଆନ୍ତା ? ମୁଁ ତାଙ୍କ ଘରେ ଥିବା ସମୟରେ ତାଙ୍କର ଜଣେ ପୁତୁରା କଲେଜରେ ପଢୁଥିଲା । ପରୀକ୍ଷାରେ ସେ ଅସଦାଚରଣ କରୁଥିବାର ଦେଖି ତାକୁ ତହିଁରୁ ନିବୃତ୍ତ କରାଇବା ଲକ୍ଷ୍ୟରେ ଖଣ୍ଡେ କାଗଜରେ ତା ରୋଲ୍‌ନମ୍ବର ଟିପିଲି । ସେ ଭାବୁଥିଲା ମୁଁ ତା ବାଡ଼ିପଟ ଲୋକ ତ, ତାକୁ ତା କାର୍ଯ୍ୟରେ ସାହାଯ୍ୟ କରିବି ସିନା, ତହିଁରେ ବାଧକ ହେବି ନାହିଁ । ଏ ଘଟଣା ପରେ ସେ ମତେ ଅପମାନିତ କରିବା ପାଇଁ ଘର ସାମ୍‌ନା ପଡ଼ିଆରେ ରାତି ଅନ୍ଧାରରେ ସାଙ୍ଗମାନଙ୍କ ସହିତ ମୋ ନା ଧରି କୁହାଟ ମାରେ । ଦେଈ ଏକଥା ଜାଣିଲେ । ଦିନେ ତାଙ୍କ ପୁତୁରାକୁ ଡାକି କହିଲେ, ''ଗଣେଶ ମୋ ପାଖରେ ଅଛି । ସେ ମୋ ଭାଇ, ତା'ର ଯଦି କିଛି କ୍ଷତି ହୁଏ, ତା ହେଲେ ତୁ ମୋ ପୁତୁରା ହେଲେ ବି ତତେ ଛାଡ଼ିବି ନାହିଁ । ଦରକାର ପଡ଼ିଲେ କୋର୍ଟରେ ଛିଡ଼ା ହୋଇ ତୋ ବିରୁଦ୍ଧରେ ସାକ୍ଷୀ ଦେବି ।'' ଅନେକ ସତକଥା ସାହସ ଅଭାବରୁ ଅକୁହା ରହିଯାଏ ଓ ଅନେକ ମିଛ କଥା ସାହସ ଅଭାବରୁ ଉପରେ ମଡ଼େଇ ହୋଇପଡ଼େ । ଦେଈଙ୍କଠାରେ ସେପରି ହେବାର ଜଣାନାହିଁ । ସତ୍ୟପ୍ରତି ଆଗ୍ରହର ଅର୍ଥ ସତ୍ୟ ଚିନ୍ତନ, ସତ୍ୟକଥନ ଓ ସତ୍ୟ ଆଚରଣ । ଏହି ଭାବରେ ଦେଖିଲେ ଦେଈ ଆମର ଜଣେ ସଚ୍ଚା ସତ୍ୟାଗ୍ରହୀ । ତାଙ୍କ ବିଚାର ଏକବାରେ ସିଧାସଳଖ, 'ଯଦି', 'କିନ୍ତୁ' ବିବର୍ଜିତ । ତାଙ୍କର ବିଚାର ଗ୍ରହଣ କରିବାକୁ ବହୁ ଲୋକ କୁଣ୍ଠିତ । ଏପରି କୁଣ୍ଠାର ଚିହ୍ନ ସମରେନ୍ଦ୍ର କୁଣ୍ଡୁ (ସ୍ୱର୍ଗତ), ଯାମିନୀ ବାବୁ ଓ ତାଙ୍କ ସ୍ୱାମୀଙ୍କଠାରେ ମଧ୍ୟ ବହୁବାର ଲକ୍ଷ୍ୟ କରିଛି ।

ସେ ଥିଲେ ଜଣେ ସ୍ୱାଧୀନଚେତା ନାରୀ । ବର୍ତ୍ତମାନ ତ ନାରୀ ସ୍ୱାଧୀନତାର ଯୁଗ । କିନ୍ତୁ ନାରୀ ସ୍ୱାଧୀନତା କହିଲେ ସଚରାଚର ଯାହା ବୁଝନ୍ତି, ତାହା ହେଲା ଯେ ନାରୀ ତିନୋଟି 'ଗଣ୍ଠି' ପରିହାର କରିପାରିଲେ ସେ ମୁକ୍ତ । ଏହି ତିନୋଟି ଗଣ୍ଠିହେଲା ସଂସ୍କୃତି ଓ ସୌଷ୍ଠବର ବନ୍ଧନ- ପିନ୍ଧା ଶାଢ଼ୀର ଖୋସଣି ଗଣ୍ଠି, ମସ୍ତକରେ ଜୁଡ଼ା ଗଣ୍ଠି ଓ ବାହାବେଦୀର ଗଇଁଠାଳ

ଗଣ୍ଡ । ଶାଢ଼ୀ ଛାଡ଼ି 'ଡ୍ରେସ' ପିନ୍ଧିଲେ, କେଶ ମୁକୁଳା ରଖିଲେ ବା/ଓ କର୍ତ୍ତନ କରିଦେଲେ ଏବଂ ବାହାବନ୍ଧନରେ ନ ପଡ଼ିଲେ, ବା ପଡ଼ିଥିଲେ କୌଣସି ଦାୟିତ୍ୱ ମୁଣ୍ଡକୁ ନନେଲେ ବା ସେ ବନ୍ଧନ କଚେରୀରେ ତୁଟାଇ ଦେଲେ ସ୍ୱାଧୀନ ହୋଇଯାଆନ୍ତି ବୋଲି କେତେକ ଭାବୁଥିବା ପରି ମନେହୁଏ । ଏହା ପୂରାପୂରି ଭୁଲ, ସ୍ୱାଧୀନତା ବହିରଙ୍ଗ ବ୍ୟାପାର ନୁହେଁ, ଏହା ଅନ୍ତରଙ୍ଗ ବ୍ୟାପାର । ଚିନ୍ତନ ଓ କଥନରେ ନିହିତ । ନିଜ ସଂସ୍କୃତି, ପରମ୍ପରା, ସୌଷ୍ଠବର ଅନୁବର୍ତ୍ତୀ ଓ ଅଧୀନ ହୋଇ ମଧ୍ୟ ଜଣେ ଚିନ୍ତା, ବାର୍ତ୍ତା ଓ ଆଚରଣରେ ସ୍ୱାଧୀନ ହୋଇପାରେ, ଏପରି ଭାବେ ଯେଉଁ କେତେକ ସ୍ୱାଧୀନଚେତା ନାରୀ ଆମର ବନ୍ଦନୀୟା, ତନ୍ମଧ୍ୟରୁ ଗୋଦାବରୀ ଦେଈ ଅନ୍ୟତମ ବୋଲି ମୁଁ ବିଚାର କରେ । ସେ ଓଡ଼ିଶାର ଗର୍ବ ଓ ଗୌରବ ।



*ପ୍ରାଧ୍ୟାପକ, ସ୍ନାତକୋତ୍ତର ଦର୍ଶନ ବିଭାଗ,*
***ଉତ୍କଳ ବିଶ୍ୱବିଦ୍ୟାଳୟ, ବାଣୀବିହାର***



Calcutta
12.7.93

Dear Mr. Rabindra Mohan Das,

I am sorry to hear of the demise of your wife. Accept this suffering with resignation and love. She has gone home to God - to the one who loved her first. I know what you feel, each time you see her empty place. But remember she is at home with God. I pray to God that you may accept this great loss with joy - for she is closer to you now than ever before.

Keep the joy of loving and Serving God in His poor always - forgetting now yourself and thinking only of the others. God loves you. You are precious to Him.

God Bless You.

M. Teresa mc

[illegible]